ପ୍ରକାଶକ
ଓଡ଼ିଶା ସରକାରଙ୍କ
ସ୍ୱରାଷ୍ଟ୍ର ( ଲୋକସଂପର୍କ ) ବିଭାଗ
ନୂଆ ରାଜଧାନୀ, ଭୁବନେଶ୍ୱର

# ଗାନ୍ଧୀ-ଜୟନ୍ତୀ

ଦୁଇ, ଅକ୍ଟୋବର—୧୯୫୮

ପ୍ରାପ୍ତିସ୍ଥାନ
ଲୋକସଂପର୍କ ଅଫିସ,
ନୂଆରାଜଧାନୀ ଭୁବନେଶ୍ୱର
ଓ
ପ୍ରତ୍ୟେକ ଜିଲ୍ଲାର
ଲୋକସଂପର୍କ ଅଫିସ

# ମହାତ୍ମା ଗାନ୍ଧୀ

ମହାତ୍ମା ଗାନ୍ଧୀ ଯେତେବେଳେ ଆମ ଦେଶରେ ଜନ୍ମଗ୍ରହଣ କଲେ, ସେତେବେଳକୁ ଭାରତରେ ବ୍ରିଟିଶ ରାଜତ୍ୱ ଦୃଢ଼ଭାବରେ ପ୍ରତିଷ୍ଠିତ ହୋଇସାରିଥିଲା; କିନ୍ତୁ ତାଙ୍କର ଯେତେବେଳେ ପରଲୋକ ହୋଇଗଲା ସେତେବେଳକୁ ଭାରତ ସମ୍ପୂର୍ଣ୍ଣରୂପେ ବ୍ରିଟିଶ ଶାସନରୁ ମୁକ୍ତ ହୋଇ ସାରିଥିଲା । ଭାରତବାସୀ ତାଙ୍କର ଐତିହ୍ୟ ଓ ସଂସ୍କୃତି ଫେରିପାଇଥିଲେ । ମୂକ ଜନତାଙ୍କ ମୁହଁରେ ଭାଷା ଫୁଟି ଉଠିଥିଲା । ନିରସ୍ତ୍ର ଭାରତବାସୀ ତାଙ୍କର ନେତୃତ୍ୱରେ ଏକ ବିରାଟ ସଂଗ୍ରାମରେ ବିଜୟୀ ହୋଇଥିଲେ ଏବଂ ଏହି ସଂଗ୍ରାମଯୋଗୁ ଯେଉଁ ବିରାଟ ନୈତିକଶକ୍ତି ମିଳିଥିଲା, ତାହା ସମଗ୍ର ବିଶ୍ୱର ଦୃଷ୍ଟି ଆକର୍ଷଣ କରିଥିଲା ଓ ପ୍ରଶଂସା ଲାଭ କରିଥିଲା । ମହାତ୍ମା ଗାନ୍ଧୀଙ୍କ ଐନ୍ଦ୍ରଜାଳିକ ପ୍ରଭାବ ଯୋଗୁ ଏହି ଅଭୂତପୂର୍ବ ଘଟଣା ଘଟିପାରିଥିଲା । ଏହି ଅଭୂତପୂର୍ବ କାହାଣୀ ଗାନ୍ଧୀଜୀଙ୍କ ଜୀବନକାହାଣୀ ସହିତ ଓତପ୍ରୋତ ଭାବରେ ଜଡ଼ିତ । ମହାତ୍ମା ଗାନ୍ଧୀ କେବଳ ଜଣେ ରାଜନୀତିଜ୍ଞ ନ ଥିଲେ; ସେ ଥିଲେ ଏକାଧାରରେ ଜଣେ ଦାର୍ଶନିକ, କର୍ମୀ, ସଂସ୍କାରକ ଓ ଶିକ୍ଷାବିତ୍; ତେଣୁ ତାଙ୍କ ଜୀବନକାହାଣୀ ସହିତ ପ୍ରତ୍ୟେକ ଭାରତବାସୀ ପରିଚିତ ହେବା ବାଞ୍ଛନୀୟ ।

## ବାଲ୍ୟଜୀବନ

ମହାତ୍ମା ମୋହନଦାସ କରମଚାନ୍ଦ ଗାନ୍ଧୀ ୧୮୬୯ ଅକ୍ଟୋବର ୨ ତାରିଖ ଦିନ ବମ୍ବେ ରାଜ୍ୟର ତତ୍କାଳୀନ ଏକ କ୍ଷୁଦ୍ର ସହର ପୋରବନ୍ଦରଠାରେ ଜନ୍ମଗ୍ରହଣ କରିଥିଲେ । ତାଙ୍କ ପିତା କରମଚାନ୍ଦ ସେତେବେଳେ ପୋରବନ୍ଦରର ପ୍ରଧାନମନ୍ତ୍ରୀ ଥିଲେ । ତାଙ୍କ ମାତା ପୁତୁଳି ବାଈ ଜଣେ ଧୀରସ୍ଥିର ଏବଂ ଧର୍ମଭୀରୁ ମହିଳା ଥିଲେ । ଗାନ୍ଧୀଜୀ ପିଲାଦିନେ ସେହି ପୋରବନ୍ଦରଠାରେ ଏକ ପ୍ରାଥମିକ ବିଦ୍ୟାଳୟରେ ଅଧ୍ୟୟନ କରିଥିଲେ । ତା ପରେ ତାଙ୍କ ପିତା ରାଜକୋଟର ଦେୱାନ ହେଲେ ଏବଂ ସେଠାରେ ବାଳକ ଗାନ୍ଧୀ ପ୍ରାଥମିକ ଶିକ୍ଷା ଶେଷ କରି ହା:ଇ:ସ୍କୁଲରେ ଅଧ୍ୟୟନ କଲେ । ବାଲ୍ୟାବସ୍ଥାରୁ ତାଙ୍କ ପ୍ରତିଭାର କୌଣସି ପରିଚୟ ମିଳି ନ ଥିଲେ ମଧ୍ୟ ସତ୍ୟପ୍ରତି ନିଷ୍ଠା ଓ ଚରିତ୍ରବଳର କେତେକ ଦୃଷ୍ଟାନ୍ତ ମିଳିଥିଲା ।

## ଛାତ୍ରଜୀବନ

ହା:ଇ: ସ୍କୁଲରେ ଅଧ୍ୟୟନ କରୁଥିବା ଅବସ୍ଥାରେ ମାତ୍ର ୧୩ ବର୍ଷ ବୟସରେ ଗାନ୍ଧୀଜୀ ଶ୍ରୀମତୀ କସ୍ତୁରବାଙ୍କୁ ବିବାହ କରିଥିଲେ । ମାଟ୍ରିକୁଲେସନ ପାଶ କରି ସାରି ସେ ଭବନଗରର ସାମଲଦାସ କଲେଜରେ ଭର୍ତ୍ତି ହେଲେ; ମାତ୍ର ସେଠାର ବାୟୁମଣ୍ଡଳ ତାଙ୍କୁ ବିରକ୍ତିକର ବୋଧ ହୋଇଥିଲା । ଏହା ଭିତରେ ତାଙ୍କ ପିତାଙ୍କର ମୃତ୍ୟୁ ଘଟିଲା ଏବଂ ଗାନ୍ଧୀଜୀ ପିତାଙ୍କ ସ୍ଥାନ ଅଧିକାର କରିବା ଆଶାରେ ବାରିଷ୍ଟର ପଢ଼ିବାପାଇଁ ଇଂଲଣ୍ଡ ଯାତ୍ରା କରିବା ନିମନ୍ତେ ସ୍ଥିର କଲେ । ତାଙ୍କ ଜାତିର କେତେକ ଲୋକ ଏଥିରେ ରାଜି ହୋଇ ନ ଥିଲେ । ଯାହା ହେଉ ମଦ, ମାଂସ ଓ ସ୍ତ୍ରୀ ଛୁଇଁବେ ନାହିଁ ବୋଲି ମା'ଙ୍କ ନିକଟରେ ଶପଥ କରି ସେ ଇଂଲଣ୍ଡ

ଯାତ୍ରାକଲେ । ଇଂଲଣ୍ଡରେ ଗାନ୍ଧୀଜୀ ଗୋଟିଏ ନିରାମିଷ ହୋଟେଲରେ ଖାଦ୍ୟପେୟର ବ୍ୟବସ୍ଥା କରି ଅଧ୍ୟୟନ କରୁଥିଲେ । ଇଂଲଣ୍ଡରେ ରହିବାର ପ୍ରଥମାବସ୍ଥାରେ ସେ ଇଂରେଜ ଭଦ୍ରବ୍ୟକ୍ତି ସାଜିବାପାଇଁ ବହୁ ଦାମିକା ପୋଷାକ ଆଦି କିଣିଥିଲେ; ମାତ୍ର ଶେଷଆଡ଼କୁ ତାଙ୍କର ମୋହ ଭାଙ୍ଗିଗଲା । ସେଠାରେ ଗାନ୍ଧୀଜୀ ଜଣେ ବ୍ରହ୍ମବିଦ୍ୟା ସମିତିର ସଭ୍ୟଙ୍କ ସଙ୍ଗେ ବନ୍ଧୁତା ସ୍ଥାପନ କରି ତାଙ୍କଠାରୁ ଭଗବତ୍ ଗୀତାର ଇଂରେଜୀ ଅନୁବାଦ ଓ ବୁଦ୍ଧଦେବଙ୍କ ଜୀବନ ଚରିତ ପ୍ରଭୃତି ବିଖ୍ୟାତ ପୁସ୍ତକମାନ ପଢ଼ିବାପାଇଁ ପାଇଥିଲେ । ଏହି ପୁସ୍ତକ ଅଧ୍ୟୟନଫଳରେ ତାଙ୍କ ଚିନ୍ତାଧାରାରେ ବିରାଟ ପରିବର୍ତ୍ତନ ଘଟିଥିଲା ।

## କର୍ମମୟ ଜୀବନର ଆରମ୍ଭ

୧୮୯୧ ମସିହାରେ ବାରିଷ୍ଟରୀ ପାଶ କରି ଯେତେବେଳେ ଗାନ୍ଧୀଜୀ ବମ୍ବେରେ ପହଞ୍ଚିଲେ, ପ୍ରଥମେ ତାଙ୍କ ମା'ଙ୍କ ମୃତ୍ୟୁ-ସମ୍ବାଦ ପାଇ ସେ ଅତ୍ୟନ୍ତ ବ୍ୟଥିତ ହୋଇ ପଡ଼ିଥିଲେ । ପିଲାଙ୍କର ଶିକ୍ଷାର ବ୍ୟବସ୍ଥା କରି ସାରି ଗାନ୍ଧୀଜୀ ବମ୍ବେରେ ବାରିଷ୍ଟରି କରିବାପାଇଁ ସ୍ଥିରକଲେ; ମାତ୍ର ସେ ପ୍ରଥମଥର କୋର୍ଟରେ ଛିଡ଼ାହେବା ମାତ୍ରେ ତାଙ୍କର ଯେମିତି କଣ ହୋଇଗଲା ଏବଂ ସେ ପଦେ କଥା ମଧ୍ୟ କହି ପାରିଲେ ନାହିଁ । ବମ୍ବେରେ ଅକୃତକାର୍ଯ୍ୟ ହୋଇ ସେ ପୁଣି ରାଜକୋଟକୁ ଫେରି ଆସିଲେ, ମାତ୍ର ସେଠାରେ ମଧ୍ୟ ବିଶେଷ କୃତକାର୍ଯ୍ୟ ହୋଇ ପାରିଲେ ନାହିଁ । ଏହି ସମୟରେ ଏକ ମକଦ୍ଦମାରେ ଲଢ଼ିବାପାଇଁ ଅବଦୁଲା କମ୍ପାନି ଗାନ୍ଧୀଜୀଙ୍କୁ ଦକ୍ଷିଣ-ଆଫ୍ରିକା ଯିବାପାଇଁ ଡାକିଲେ । ଗାନ୍ଧୀଜୀ ସଙ୍ଗେ ସଙ୍ଗେ ତହିଁରେ ରାଜି ହୋଇ ୧୮୯୩ରେ ଦକ୍ଷିଣ-ଆଫ୍ରିକା ଯାତ୍ରାକଲେ ।

ସେ ସମୟରେ ଦକ୍ଷିଣ-ଆଫ୍ରିକାରେ ଯେଉଁ ଭାରତୀୟମାନେ ଥିଲେ, ସେମାନେ ଯେତେ ବଡ଼ ହୁଅନ୍ତୁ ପଛକେ ଗୋରାମାନେ ସେମାନଙ୍କୁ ଅସ୍ପୃଶ୍ୟ ବୋଲି ମନେ କରୁଥିଲେ ଏବଂ କୁଲି ବୋଲି ଡାକୁଥିଲେ । ଗାନ୍ଧୀଜୀ ଡରବାନ୍‌ରେ ସପ୍ତାହେ ମାତ୍ର ରହି ଟ୍ରାନ୍‌ସଭାଲ ରାଜଧାନୀ ପ୍ରିଟୋରିଆ ଯାତ୍ରା କଲେ । ଖଣ୍ଡିଏ ପ୍ରଥମ ଶ୍ରେଣୀ ଟିକେଟ୍ କିଣି ଯିବାପାଇଁ ରେଲଗାଡ଼ିରେ ବସିଥିବାବେଳେ ଜଣେ ଗୋରା ଯାତ୍ରୀ କଳା ଲୋକ ଜଣେ କାହିଁକି ପ୍ରଥମ ଶ୍ରେଣୀରେ ବସିଲେ ବୋଲି ଆପତ୍ତି କଲେ । ତେଣୁ ରେଲବାଇ କର୍ତ୍ତୃପକ୍ଷ ତାଙ୍କୁ ସେଠାରୁ ତୃତୀୟ ଶ୍ରେଣୀକୁ ଉଠାଇ ଦେବାପାଇଁ ଆଦେଶ ଦେଲେ; ମାତ୍ର ଗାନ୍ଧୀଜୀ ପ୍ରଥମ ଶ୍ରେଣୀରୁ ଉଠିବେ ନାହିଁ ବୋଲି ଦୃଢ଼ଭାବରେ ମନା କରିଦେବାରୁ ଜଣେ କନେଷ୍ଟବଲ ତାଙ୍କୁ ଧକ୍‌କା ମାରି ବାହାର କରିଦେଲା । ଆହୁରି ଥରେ ମଧ୍ୟ ସେ ଏହିପରି ଅପମାନ ପାଇଥିଲେ । ଟ୍ରାନ୍‌ସଭାଲ୍‌ରେ ଭାରତୀୟମାନେ ପୋଲ୍ ଟିକସ ଦେଉଥିଲେ ଏବଂ ରାତି ୯ଟା ପରେ ରାସ୍ତାରେ ଯିବାକୁ ସେମାନଙ୍କୁ ମନା କରି ଦିଆଯାଇଥିଲା । ଗାନ୍ଧୀଜୀ ରାତି ୯ଟା ପରେ ଟ୍ରାନ୍‌ସଭାଲ ସହର ଭିତରେ ଯାଉଥିବାବେଳେ ପୋଲିସବାଲା ତାଙ୍କୁ ଧକ୍‌କା ମାରି ନେଇଯାଇଥିଲେ ।

ଗାନ୍ଧୀଜୀ ଦକ୍ଷିଣ-ଆଫ୍ରିକାରେ ନିଷ୍ଠାପର ଭାବରେ ଆଇନ ବ୍ୟବସାୟ ଚଳେଇଲେ ଏବଂ ଆଇନ ବିଷୟରେ ଯଥେଷ୍ଟ ଦକ୍ଷତା ହାସଲ କଲେ । ସେ ତାଙ୍କ କାମ ଶେଷ କରି ଡରବାନଠାରୁ ଭାରତ ଯାତ୍ରା କରିବା ପାଇଁ ସ୍ଥିର କଲେ; ମାତ୍ର ତାଙ୍କୁ ବିଦାୟ ଦେବାଦିନ ଭାରତୀୟମାନେ ଜଣାଇଲେ ଯେ ଭାରତୀୟମାନଙ୍କ ଭୋଟ କ୍ଷମତା ରଦ୍ଦ କରିଦେବା ନିମନ୍ତେ ନେଟାଲ ସରକାର ସ୍ଥିର କରିଛନ୍ତି । ଗାନ୍ଧୀଜୀ ସଙ୍ଗେ ସଙ୍ଗେ ଭାରତ-ଯାତ୍ରା ସ୍ଥଗିତ ରଖି ଏହି ଭାରତୀୟ

ବିରୋଧୀ ଆଇନ ବିରୁଦ୍ଧରେ ଜନମତ ସଂଗ୍ରହ କଲେ ଏବଂ ୧୦ ହଜାର ଲୋକଙ୍କ ଦସ୍ତଖତରେ ଏହି ଆଇନ ଗ୍ରହଣ ନ କରିବାକୁ ତତ୍‌କାଳୀନ ଉପନିବେଶ ମନ୍ତ୍ରୀ ଲର୍ଡ଼ ରିପନଙ୍କ ନିକଟକୁ ଦରଖାସ୍ତ ପଠାଇଲେ । ଗାନ୍ଧୀଜୀ ନେଟାଲ ସୁପ୍ରିମ୍ କୋର୍ଟରେ ଆଡ଼ଭୋକେଟ ରୂପେ କାର୍ଯ୍ୟ କରିବାକୁ ସ୍ଥିର କଲେ ।

## ଦକ୍ଷିଣ-ଆଫ୍ରିକାରେ ଅସହଯୋଗ ଆନ୍ଦୋଳନର ନେତୃତ୍ୱ

ଏହି ସମୟରେ ଗାନ୍ଧୀଜୀ ଛମାସ ଭାରତ ଯାଇ ଫେରି ଆସିବା ପାଇଁ ଛୁଟିନେଲେ । ଭାରତରେ ଥିବାବେଳେ ସେ ଭାରତର ବହୁସ୍ଥାନରେ ବୁଲି ଦକ୍ଷିଣ-ଆଫ୍ରିକାର ଭାରତୀୟଙ୍କ ସମସ୍ୟା ସଂପର୍କରେ ବିଶିଷ୍ଟ ବ୍ୟକ୍ତିଙ୍କୁ ଅବହିତ କରାଇଥିଲେ । ବମ୍ବେର ଏକ ସାଧାରଣ ସଭାରେ ଏ ସଂପର୍କରେ ସେ ଭାଷଣ ଦେଇଥିଲେ । ଏହା ଭିତରେ ଦକ୍ଷିଣ-ଆଫ୍ରିକା ଭାରତୀୟମାନଙ୍କଠାରୁ ଏକ ଜରୁରୀ ବାର୍ତ୍ତା ପାଇ ୧୮୯୬ ମସିହାରେ ସପରିବାର ଦକ୍ଷିଣ-ଆଫ୍ରିକା ଯାତ୍ରାକଲେ । ଦକ୍ଷିଣ-ଆଫ୍ରିକାରେ ଓହ୍ଲାଇଲା ପୂର୍ବରୁ ଗୋରାମାନେ ଶୁଣିଥିଲେ ଯେ ସେ ତାଙ୍କ ସ୍ଥାନରେ ଅନେକ ଭାରତୀୟଙ୍କୁ ବସବାସ କରିବାପାଇଁ ନେଇ ଆସିଛନ୍ତି; ତେଣୁ ସେ ଓହ୍ଲାଇଲାକ୍ଷଣି ଗୋରା ଲୋକେ ତାଙ୍କୁ ଘେରିଯାଇ ଭୟଙ୍କର ମାଡ଼ ଦେଇଥିଲେ । ଜଣେ ସାହସିନୀ ଇଂରେଜ ମହିଳା ସାହାଯ୍ୟ କରି ନ ଥିଲେ ଗାନ୍ଧୀଜୀଙ୍କୁ ସେଦିନ ସେମାନେ ହୁଏତ ମାରିଦେଇଥାନ୍ତେ । ଗାନ୍ଧୀଜୀ ସେମାନଙ୍କୁ ଚିହ୍ନଟ କରିଦେଲେ ଏବଂ ସମସ୍ତଙ୍କୁ ଦଣ୍ଡ ଦିଆଯିବ ବୋଲି ଇଂଲଣ୍ଡର ଉପନିବେଶ ମନ୍ତ୍ରୀ ଆଦେଶ ଦେଲେ ମଧ୍ୟ ଗାନ୍ଧୀଜୀ ତାହା କରିବାକୁ ରାଜି ହୋଇ ନ ଥିଲେ ଏବଂ କହିଥିଲେ

ଯେ ସେମାନେ ଭୁଲ ବାଟରେ ଯାଇ ଏହା କରୁଛନ୍ତି । ଭୁଲ ବୁଝି ପାରିଲେ ସେମାନେ ଦୁଃଖିତ ହେବେ । ଏହା ମହାତ୍ମା ଗାନ୍ଧୀଙ୍କ ଛଡ଼ା ଆଉ କିଏ କହି ପାରନ୍ତା ?

୧୮୯୯ରେ 'ବୋ'ର୍' ଯୁଦ୍ଧ ଲାଗିଲା । ଗାନ୍ଧୀଜୀଙ୍କ ସହାନୁଭୂତି ବୋର୍‌ମାନଙ୍କ ପ୍ରତି ଥିଲେ ମଧ୍ୟ ବ୍ରିଟିଶ ସାମ୍ରାଜ୍ୟର ପ୍ରଜାରୂପେ ସରକାରଙ୍କୁ ସାହାଯ୍ୟ କରିବା ପାଇଁ ଗାନ୍ଧୀଜୀ ଭାରତୀୟଙ୍କୁ ପରାମର୍ଶ ଦେଲେ ଏବଂ ଏଥିପାଇଁ ୧୧୦୦ ଭାରତୀୟଙ୍କୁ ନେଇ ଏକ ଆମ୍ବୁଲାନ୍‌ସ ବାହିନୀ ଗଠନ କରିଥିଲେ । ଏହି ସମୟରେ ଭାରତକୁ ଚାଲି ଆସିବାକୁ ସେ ସ୍ଥିର କଲେ । ଭାରତରେ ପହଞ୍ଚି ଗାନ୍ଧୀଜୀ କଲିକତା କଂଗ୍ରେସରେ ଯୋଗଦେଲେ ଏବଂ ସ୍ୱର୍ଗୀୟ ଗୋଖଲେଙ୍କ ଅତିଥି ହୋଇଥିଲେ । ଏହା ପରେ ଗାନ୍ଧୀଜୀ ପୁଣି ଡାକରା ପାଇଁ ଦକ୍ଷିଣ-ଆଫ୍ରିକା ଫେରିଗଲେ ଏବଂ ଟ୍ରାନ୍‌ସଭାଲକୁ ତାଙ୍କ କର୍ମକ୍ଷେତ୍ରରୂପେ ବାଛିଲେ । ଭାରତୀୟଙ୍କ ପ୍ରତି ହେଉଥିବା ଅନ୍ୟାୟର ପ୍ରତିରୋଧ ପାଇଁ ସେ ଭାରତବାସୀଙ୍କୁ ସଂଗଠିତ କରୁଥିଲେ ମଧ୍ୟ ଇଉରୋପୀୟମାନଙ୍କ ପ୍ରତି ତାଙ୍କର କୌଣସି ବିଦ୍ୱେଷଭାବ ନ ଥିଲା । ତେଣୁ "ଜୁଲୁ" ବିଦ୍ରୋହ ଆରମ୍ଭ ହେଲାକ୍ଷଣି ଗାନ୍ଧୀଜୀ ପୁଣି ସରକାରଙ୍କୁ ସାହାଯ୍ୟ କରିଥିଲେ । ଜୁଲୁ ଅଞ୍ଚଳରେ ବୁଲିଲାବେଳେ ବ୍ରହ୍ମଚାରୀ ଭାବରେ ଜୀବନଯାପନ କରିବା କଥା ତାଙ୍କ ମନକୁ ଆସିଥିଲା ଏବଂ ଜୁଲୁ ବିଦ୍ରୋହ ପରେ ପରେ ୧୯୦୬ରେ ସେ ପୂର୍ଣ୍ଣ ବ୍ରହ୍ମଚର୍ଯ୍ୟ ପାଳନ କରିବେ ବୋଲି ଘୋଷଣା କଲେ । ସେତେବେଳକୁ ସେ ନେଟାଲରେ ଫେନିକ୍‌ସ ଆଶ୍ରମ ଓ ଟ୍ରାନ୍‌ସଭାଲରେ ଦୁଇଟି ଆଶ୍ରମ ସ୍ଥାପନ କରି ସରଳ ଜୀବନଯାପନର ଆଦର୍ଶ ସ୍ଥାପନ କରିଥାନ୍ତି ।

ଦକ୍ଷିଣ-ଆଫ୍ରିକାରେ ଭାରତୀୟମାନଙ୍କ ପ୍ରତି ଯେଉଁ ଜୁଲମ ଓ ଅନ୍ୟାୟ କରାଯାଉଥିଲା, ତାର ପ୍ରତିକାର କପରି ଭାବରେ କରା-ଯାଇପାରେ ବୋଲି ଚିନ୍ତା କରି କରି ଶେଷରେ ଅହିଂସ ପ୍ରତିରୋଧ ଉପାୟରେ ତାହା କରିବେ ବୋଲି ସ୍ଥିର କଲେ । ୧୯୦୭ରେ ଟ୍ରାନ୍‌ସଭାଲ ସରକାର ଏକ ଭାରତୀୟ-ବିରୋଧୀ ଆଇନ ପାଶ କରି ସେଥିରେ ପ୍ରତ୍ୟେକ ଭାରତୀୟଙ୍କୁ ନାମ ରେଜିଷ୍ଟ୍ରର କରିବାକୁ ଓ ଟିପଦେବା ପାଇଁ ବାଧ୍ୟ କରିଥିଲେ । ଗାନ୍ଧୀଜୀଙ୍କ ନେତୃତ୍ୱରେ ଭାରତୀୟମାନେ ଏହା କରିବାକୁ ମନା କରି ଦେଇଥିଲେ । ଗାନ୍ଧୀଜୀ ଏଥିପାଇଁ ଗିରଫ ହୋଇ ଦୁଇ ମାସ ଜେଲଦଣ୍ଡ ପାଇଥିଲେ । ନାମ ରେଜିଷ୍ଟ୍ରି କଲେ ଏହି ଆଇନ ପ୍ରତ୍ୟାହାର କରାଯିବ ବୋଲି ସରକାର କହିବାରୁ ଗାନ୍ଧୀଜୀ ପ୍ରଥମେ ନାମ ରେଜିଷ୍ଟ୍ରି କଲେ, ମାତ୍ର ସରକାର ତାଙ୍କ ପ୍ରତିଶ୍ରୁତି ରକ୍ଷା କଲେ ନାହିଁ । ପୁଣି ଆନ୍ଦୋଳନ ଚାଲିଲା ଏବଂ ଗାନ୍ଧୀଜୀ ତିନି ଥର ଗିରଫ ହେଲେ । ହଜାର ହଜାର ଭାରତୀୟ ମଧ୍ୟ ଜେଲଦଣ୍ଡ ବରଣ କଲେ । ସରକାରଙ୍କ ପକ୍ଷରୁ ନାନା ଅତ୍ୟାଚାର ଚାଲିଲା । ୧୯୧୪ରେ ଗାନ୍ଧୀଜୀଙ୍କୁ ଖଲାସ କରି ଦିଆଗଲା । ଦକ୍ଷିଣ-ଆଫ୍ରିକାର ଶାସନକର୍ତ୍ତା ଜେନେରାଲ ସ୍ମଟ୍‌ସ୍ ଓ ଗାନ୍ଧୀଜୀଙ୍କ ଭିତରେ ଏକ ଚୁକ୍ତି ସ୍ୱାକ୍ଷରିତ ହେଲା । ଏଥିରେ ଭାରତୀୟଙ୍କ ପ୍ରାୟ ସମସ୍ତ ଦାବୀ ଗ୍ରହଣ କରି ନିଆଗଲା ।

## ଭାରତରେ ଗାନ୍ଧୀଜୀ

୧୯୧୫ରେ ଗାନ୍ଧୀଜୀ ଭାରତକୁ ଫେରି ଆସିଲେ । ଭାରତରେ ସେତେବେଳେ ଗାନ୍ଧୀଜୀ ବିଶେଷ ଭାବରେ ପରିଚିତ ନ ଥିଲେ । ପ୍ରଥମ ବର୍ଷ ଦେଶ ବିଷୟରେ ଅନୁଧ୍ୟାନ କରିବା ପାଇଁ ସ୍ଥିର କରି ୧୯୧୫ରେ ସେ ସାବରମତୀ ଆଶ୍ରମ ପ୍ରତିଷ୍ଠା କଲେ । ଏହିଠାରେ

ଅନ୍ୟାନ୍ୟ ଆଶ୍ରମବାସୀଙ୍କ ସଙ୍ଗେ ସେ ଅହିଂସା, ସତ୍ୟ, ବ୍ରହ୍ମଚର୍ଯ୍ୟ ଆଦି ବ୍ରତ ପାଳନ କରି ସାଧନ ଆରମ୍ଭ କଲେ । ୧୯୧୭ରେ ବିହାରର ଚମ୍ପାରଣଠାରେ ସେ ପ୍ରଥମ ସତ୍ୟାଗ୍ରହ ଅଭିଯାନ ଚଳାଇଲେ । ଚମ୍ପାରଣରେ ବ୍ରିଟିଶ ନୀଳଚାଷର ମାଲିକମାନେ ଚାଷୀଙ୍କ ଉପରେ ଯେଉଁ ଅତ୍ୟାଚାର କରୁଥିଲେ, ତାହା ଅନୁସନ୍ଧାନ କରିବା ପାଇଁ ମନା କରି ଦିଆଯିବାରୁ ଏହି ସତ୍ୟାଗ୍ରହ ଚାଲିଥିଲା । ଏଥିରେ ଗାନ୍ଧୀଜୀ ବିଜୟୀ ହେଲେ । ଏହାପରେ ଗୁଜରାଟର ଖେଡ଼ାଠାରେ ସତ୍ୟାଗ୍ରହ ଆରମ୍ଭ ହେଲା । ଖେଡ଼ାର ଦରିଦ୍ର ଚାଷୀ–ମାନେ 'ଖଜଣା ବନ୍ଦ' ଆନ୍ଦୋଳନ ଚଳାଇଲେ । ଏହି ସମୟରେ ୧୯୧୭ରେ ବ୍ରିଟିଶ ସରକାରଙ୍କ ନିମନ୍ତ୍ରଣକ୍ରମେ ଗାନ୍ଧୀଜୀ ସୈନ୍ୟ–ଶ୍ରେଣୀଭୁକ୍ତ ହେବା ପାଇଁ ଭାରତୀୟମାନଙ୍କୁ ଆହ୍ୱାନ କରିଥିଲେ । ଗାନ୍ଧୀଜୀ ମନେ କରୁଥିଲେ ଯେ ବିପଦବେଳେ ଭାରତବାସୀ ବ୍ରିଟିଶ ସରକାରଙ୍କୁ ସାହାଯ୍ୟ କରିବା ଉଚିତ ।

## ଭାରତରେ ସ୍ୱାଧୀନତା–ସଂଗ୍ରାମର ନେତୃତ୍ୱ

ଦ୍ୱିତୀୟ ମହାଯୁଦ୍ଧ ପରେ ୧୯୧୯ରେ କୁଖ୍ୟାତ ରାଉଲାଟ୍ ଆଇନ ବ୍ରିଟିଶ ସରକାର ଜାରି କଲେ । ଏଥିରେ ବ୍ୟକ୍ତିଗତ ସ୍ୱାଧୀନତାକୁ କ୍ଷୁଣ୍ଣ କରାଯାଇଥିଲା । ଭାରତର ଚାରିଆଡ଼େ ହରତାଳ ପାଳନ କରି ଏହାର ପ୍ରତିରୋଧ କରିବା ପାଇଁ ଗାନ୍ଧୀଜୀ ନିର୍ଦ୍ଦେଶ ଦେଲେ ଏବଂ ଭାରତର ଚାରିଆଡ଼େ ଲୋକେ ଆନନ୍ଦରେ ଏହା ପାଳନ କଲେ । ଏହାଦ୍ୱାରା ସେ ଲୋକଶକ୍ତି ଜାଗ୍ରତ କରିବାକୁ ଚାହିଁଥିଲେ । ଏଥିରେ ଗାନ୍ଧୀଜୀଙ୍କ ଗତିବିଧି ନିୟନ୍ତ୍ରଣ ପାଇଁ ସରକାର ଆଦେଶ ଦେଲେ ଏବଂ ଗାନ୍ଧୀଜୀ ତାକୁ ଅମାନ୍ୟ କରି ଗିରଫ ହେଲେ । ତାଙ୍କ ଗିରଫଦାରିର ସମ୍ବାଦ ଚାରିଆଡ଼େ ବ୍ୟାପିଯିବାରୁ

ଲୋକେ ଉତ୍କ୍ଷିପ୍ତ ହୋଇ ଉଠିଲେ ଏବଂ କେତେକ ସ୍ଥାନରେ ଧ୍ୱଂସାକାଣ୍ଡ ଘଟାଇଲେ । ଗାନ୍ଧୀଜୀ ଏଥିରେ ବ୍ୟଥିତ ହୋଇ ସତ୍ୟାଗ୍ରହ ବନ୍ଦ କରି ଦେଇ ୩ ଦିନ ଅନଶନ କରିଥିଲେ । ଏହାରି ଭିତରେ ଜାଲିଆନାବାଗର ନିର୍ମମ ହତ୍ୟାକାଣ୍ଡ ଘଟିଗଲା । ଏହି ଘଟଣାହିଁ ଭାରତରେ ସ୍ୱାଧୀନତା ସଂଗ୍ରାମର ଗତିକୁ ବଦଳାଇ ଦେଲା ।

ଗାନ୍ଧୀଜୀ ରାଜନୀତିରେ ପ୍ରତ୍ୟକ୍ଷ ଭାବରେ ଭାଗ ନେଇ କଂଗ୍ରେସର ନେତୃତ୍ୱ ଗ୍ରହଣ କଲେ ଏବଂ ଏହି ଅନୁଷ୍ଠାନକୁ ଏକ ଗଣ-ଅନୁଷ୍ଠାନରେ ପରିଣତ କରିବାପାଇଁ ଉଦ୍ୟମ କଲେ । ବ୍ରିଟିଶ ସରକାରଙ୍କ ସଙ୍ଗେ ଅସହଯୋଗ ଆନ୍ଦୋଳନ ପାଇଁ ସେ ଯେଉଁ ଆହ୍ୱାନ ଦେଲେ, ସେଥିରେ ସମଗ୍ର ଦେଶରେ ଉତ୍ସାହ ଉନ୍ମାଦନା ଖେଳିଗଲା । ବହୁ ବିଶିଷ୍ଟ ଲୋକେ ପଦବୀ ଛାଡ଼ିଦେଲେ, ଓକିଲମାନେ କଚେରି ଛାଡ଼ିଦେଲେ ଏବଂ ଛାତ୍ରମାନେ ସ୍କୁଲ କଲେଜ ଛାଡ଼ିଦେଲେ । ଶେଷରେ ୧୯୨୨ରେ ଚୌରିଚଉରା-ଠାରେ ଜନତା ଏକ ଧ୍ୱଂସାତ୍ମକ କାଣ୍ଡ ଘଟାଇବାରୁ ଗାନ୍ଧୀଜୀ ଆନ୍ଦୋଳନ ସ୍ଥଗିତ ରଖିଦେଲେ ।

## ଗାନ୍ଧୀଜୀଙ୍କ ପ୍ରଥମ ଓଡ଼ିଶା ଗସ୍ତ

ଗାନ୍ଧୀଜୀ ୧୯୨୧ରେ ପ୍ରଥମ ଥର ପାଇଁ ଓଡ଼ିଶା ଗସ୍ତରେ ଆସିଥିଲେ ଏବଂ ଦୋଳ ସମୟରେ ସେ ଭଦ୍ରକ, କଟକ, ସାକ୍ଷୀଗୋପାଳ, ପୁରୀ ଓ ବ୍ରହ୍ମପୁର ବୁଲି ଯାଇଥିଲେ । କଟକ ସ୍ୱରାଜ ଆଶ୍ରମରେ ରହିଥିଲେ ଏବଂ କାଠଯୋଡ଼ି ନଦୀ ବାଲିରେ ଏକ ବିରାଟ ସଭାରେ ଗାନ୍ଧୀଜୀ ବକ୍ତୃତା ଦେଇଥିଲେ । ସେତେବେଳେ ପୁରୀଠାରେ ବଢ଼ିଯୋଗୁ ଲୋକଙ୍କର ଯେଉଁ ଦୁର୍ଦ୍ଦଶା, ସେ

ନିଜ ଆଖିରେ ଦେଖିଥିଲେ । ତାହା ସେ କେବେ ଭୁଲି ପାରି ନ ଥିଲେ । ଏପରି ଲୋକଙ୍କଠାରୁ କିପରି କାମ ନିଆଯିବ, ସେଥିପାଇଁ ଚିନ୍ତା କରି କରି ସେ କହିଥିଲେ, "ସମସ୍ତେ ସୂତା କାଟିବା ଛଡ଼ା ଏଥିପାଇଁ ମତେ ଅନ୍ୟ ଉପାୟ ଦିଶୁନାହିଁ ।"

ଏହାପରେ ୧୯୨୨ ମାର୍ଚ୍ଚ ମାସରେ ଗାନ୍ଧୀଜୀ ଗିରଫ ହୋଇ ବିଚାରରେ ୬ବର୍ଷ କାରାଦଣ୍ଡ ଭୋଗିବା ପାଇଁ ଆଦେଶ ପାଇଲେ; ମାତ୍ର ଜେଲଭିତରେ ତାଙ୍କର ଆପେଣ୍ଡିସାଇଟିସ୍ ଅପରେସନ୍ ହେଲା, ତା ପରେ ସେ ମୁକ୍ତି ପାଇଲେ । ଜେଲରୁ ଖଲାସ ହୋଇ ଗାନ୍ଧୀଜୀ ହିନ୍ଦୁ ମୁସଲମାନଙ୍କ ଭିତରେ ଡିକ୍ତଭାବ ଏବଂ ସାଂପ୍ରଦାୟିକ ମାରପିଟ୍ ଖବର ଶୁଣି ମର୍ମାହତ ହୋଇ ପଡ଼ିଲେ ଏବଂ ଆତ୍ମଶୁଦ୍ଧି ପାଇଁ ୨୧ ଦିନ ଉପବାସ କରିଥିଲେ । କଂଗ୍ରେସ ଭାଗ ଭାଗ ହୋଇଯିବା ଦେଖି ସେ ପାଞ୍ଚବର୍ଷ ପର୍ଯ୍ୟନ୍ତ କଂଗ୍ରେସରୁ ଅଲଗା ରହିଥିଲେ ।

୧୯୨୭ରେ ଗାନ୍ଧୀଜୀ ଦ୍ୱିତୀୟ ଥର ଓଡ଼ିଶା ପରିଦର୍ଶନରେ ଆସିଥିଲେ । ଏହି ଗସ୍ତବେଳେ ଗାନ୍ଧୀଜୀ ବ୍ରହ୍ମପୁର ଯାଇଥିଲେ । ତା ପରେ ସେ କଟକ ଆସି ସ୍ୱର୍ଗୀୟ ଗୋପାଳଚନ୍ଦ୍ର ପ୍ରହରାଜଙ୍କ ବାସଭବନରେ ରହିଥିଲେ ଏବଂ କଟକରେ ଦୁଇ ଦିନ ରହିବା ଭିତରେ କୁଳବୃଦ୍ଧ ମଧୁସୂଦନଙ୍କ "ଉତ୍କଳ ଟ୍ୟାନେରୀ" ଅନୁଷ୍ଠାନ ଦେଖିଥିଲେ । କଟକ ମ୍ୟୁନିସିପାଲିଟି ପଡ଼ିଆରେ ଅନୁଷ୍ଠିତ ସାଧାରଣ ସଭାରେ ଭାଷଣ ଦେଇଥିଲେ ।

୧୯୨୯ ବେଳକୁ କଂଗ୍ରେସ ଅନୁଷ୍ଠାନ ଅଧିକ ଶକ୍ତିଶାଳୀ ଓ ସଂଗଠିତ ହୋଇଥିଲା । ଗାନ୍ଧୀଜୀ ପୁଣି କଂଗ୍ରେସ ଅନୁଷ୍ଠାନରେ

ସକ୍ରିୟ ଅଂଶ ଗ୍ରହଣ କଲେ । କଂଗ୍ରେସର ଲକ୍ଷ୍ୟ 'ପୂର୍ଣ୍ଣସ୍ୱରାଜ' ବୋଲି ଘୋଷଣା କରାଗଲା ।

## ଲବଣ-ସତ୍ୟାଗ୍ରହ

୧୯୩୦ ମାର୍ଚ୍ଚ ୧୨ ତାରିଖରେ ଗାନ୍ଧୀଜୀ ଲବଣ-ସତ୍ୟାଗ୍ରହ ନିମନ୍ତେ ୭୮ ଜଣ ଆଶ୍ରମବାସୀଙ୍କ ସହ 'ଦାଣ୍ଡିଯାତ୍ରା' କରିଥିଲେ । ଲୁଣ ମାରିବା ପରେ ୧୯୩୦ ଏପ୍ରିଲ ୬ ତାରିଖରେ ଗାନ୍ଧୀଜୀଙ୍କୁ ଗିରଫ କରାଗଲା । ଏହି ବର୍ଷ ଗୋଲଟେବୁଲ ବୈଠକ ଲଣ୍ଡନରେ ଚାଲିଥିଲା । କଂଗ୍ରେସ ଏଥିରେ ଯୋଗ ଦେବାକୁ ବ୍ରିଟିଶ ସରକାର ଚାହୁଁବାରୁ ଗାନ୍ଧୀଜୀଙ୍କୁ ତୁରନ୍ତ ଖଲାସ କରି ଦିଆ ହେଲା ଏବଂ ଗାନ୍ଧୀଜୀ ୧୯୩୧ରେ ଗୋଲଟେବୁଲରେ ଯୋଗଦେବାପାଇଁ ବିଲାତ ଗଲେ । ଏହା ପୂର୍ବରୁ ଗାନ୍ଧୀ-ଇରୱିନ ଚୁକ୍ତି ସମ୍ପାଦିତ ହୋଇ ସାଇଥାଏ । ଗାନ୍ଧୀଜୀ ଫେରିଆସିଲାବେଳକୁ ଭାରତରେ ପୁଣି ଦମନଲୀଳା ଆରମ୍ଭ ହୋଇଯାଇଥାଏ । ବାଟରେ ଗାନ୍ଧୀଜୀଙ୍କୁ ଗିରଫ କରି ନିଆଗଲା । ଏଥର କିନ୍ତୁ ଗାନ୍ଧୀଜୀ ଜେଲ ଭିତରେ ଶାନ୍ତିରେ ଅବସ୍ଥାନ କରି ପାରିଲେ ନାହିଁ । ସମ୍ବାଦ ପ୍ରକାଶ ପାଇଲା ଯେ ବ୍ରିଟିଶ ସରକାର ପୃଥକ ନିର୍ବାଚନ ପାଇଁ ଆଇନ ପ୍ରଣୟନ କରୁଛନ୍ତି; ଯାହା ଫଳରେ କେବଳ ମୁସଲମାନ ନୁହନ୍ତି, ହରିଜନମାନେ ମଧ୍ୟ ସ୍ୱତନ୍ତ୍ରଭାବରେ ଭୋଟ ଦେବେ । ଏଥିରେ ମର୍ମାହତ ହୋଇ ଗାନ୍ଧୀଜୀ ଆମରଣ ଅନଶନ ଆରମ୍ଭ କରି ଦେଲେ । ଏହା ଫଳରେ ସମଗ୍ର ଭାରତରେ ଚାଞ୍ଚଲ୍ୟ ଖେଳିଗଲା । ୫ ଦିନ ଅନଶନ ପରେ ହିନ୍ଦୁ ଓ ହରିଜନମାନେ ମିଳିତଭାବରେ ଏକ ଚୁକ୍ତିରେ ଆବଦ୍ଧ ହେଲେ ଏବଂ ତାକୁ ବ୍ରିଟିଶ ସରକାର ମାନି ନେଲେ । ଏଥିରେ ସନ୍ତୁଷ୍ଟ ହୋଇ ଗାନ୍ଧୀଜୀ ଅନଶନ ଭଙ୍ଗ

କରିଥିଲେ । ଏହାପରେ ସେ ଅସ୍ପୃଶ୍ୟତା ନିବାରଣ ନିମନ୍ତେ ସମଗ୍ର ଦେଶରେ ଅଭିଯାନ ଚଳେଇଲେ ।

ହରିଜନ ଗସ୍ତ ଭିତରେ ଗାନ୍ଧୀଜୀ ୮ ଦିନ ମାତ୍ର ଓଡ଼ିଶାରେ ଅତିବାହିତ କରିବେ ବୋଲି ସ୍ଥିର କରିଥିଲେ; ମାତ୍ର ଓଡ଼ିଶାର ଭାଗ୍ୟକୁ ସେ ମାସକରୁ ଅଧିକ ଗସ୍ତ କରିଥିଲେ । ଓଡ଼ିଶାରେ ଗାନ୍ଧୀଜୀ ହରିଜନ ଆନ୍ଦୋଳନର ପ୍ରଚାର ପାଇଁ ପଦଯାତ୍ରା କରିଥିଲେ । ଏହା ଫଳରେ ଓଡ଼ିଶାର ଜନସାଧାରଣ ଗାନ୍ଧୀଙ୍କୁ ନିକଟରେ ଦେଖିବା ଓ ତାଙ୍କ ବାର୍ତ୍ତା ଶୁଣିବା ପାଇଁ ସୁଯୋଗ ପାଇଥିଲେ । ୧୯୩୪ ମଇ ୯ ତାରିଖରୁ ପୁରୀଠାରୁ ପଦଯାତ୍ରା ଆରମ୍ଭ ହେଲା । ବାଟରେ ହରେକୃଷ୍ଣପୁର, ଚନ୍ଦନପୁର, ସାକ୍ଷୀଗୋପାଳ, ବୀରପୁରୁଷୋତ୍ତମ-ପୁର, ଦାଣ୍ଡମୁକୁନ୍ଦପୁର, ପିପିଲି, ଶିଉଳାଚକ, ବାଲକାଟି, ସତ୍ୟଭାମାପୁର, ବାଲିଅନ୍ତା, ତେଲେଙ୍ଗାପେଣ୍ଠ, କାଜିପାଟଣା ଓ କଟକଠାରେ ରହଣି ହୋଇଥିଲା । ଏହା ପରେ ସେ ଚମ୍ପାପୁର, ଭେଡ଼ା, ଲେଖନପୁର, ବହୁକୁଦ, ଶିଶୁଆ, କେନ୍ଦ୍ରାପଡ଼ା, ବରିମୂଳ ଓ ଇନ୍ଦୁପୁର, କଲ୍ୟାଣପୁର,ବରି, ସାହସପୁର ଓ ବରୁଆଁ ଯାଇଥିଲେ । ବରୁଆଁ ଠାରୁ ଯାଜପୁର ଯାଇ ସେଠୁ ବାଲେଶ୍ୱର ଗସ୍ତ କରିଥିଲେ । ବାଲେଶ୍ୱରରେ ଭଣ୍ଡାରୀପୋଖରୀ, ଓଡ଼ଙ୍ଗ ଓ ଭଦ୍ରଖ ଗସ୍ତ ପରେ ତାଙ୍କର ଓଡ଼ିଶା ଗସ୍ତ ଶେଷ ହେଲା ।

୧୯୩୮ ମାର୍ଚ୍ଚ ମାସରେ ଡେଲାଙ୍ଗଠାରେ ଅନୁଷ୍ଠିତ ଗାନ୍ଧୀ ସେବାସଂଘ ସମ୍ମିଳନୀରେ ଯୋଗ ଦେବା ନିମନ୍ତେ ଗାନ୍ଧୀଜୀ ପୁଣି ଓଡ଼ିଶା ଆସିଥିଲେ । ଏହାହିଁ ତାଙ୍କର ଶେଷ ଓଡ଼ିଶା ଗସ୍ତ । ଗାନ୍ଧୀଜୀ ଓଡ଼ିଶା ବହୁତରେ ଆସିବା ପାଇଁ ସମୟ ପାଇ ନ ଥିଲେ ମଧ୍ୟ ଓଡ଼ିଶାର ଦୁଃଖ-ଦାରିଦ୍ର୍ୟ କପରି ଦୂରିବ, ସେଥିପାଇଁ ସେ ସବୁ

ବେଳେ ଚିନ୍ତିତ ଥିଲେ ଏବଂ ନାନାଭାବରେ ଓଡ଼ିଶାର ଉନ୍ନତି ପାଇଁ ସାହାଯ୍ୟ କରି ଆସିଥିଲେ ।

## ଅଗଷ୍ଟ-ଆନ୍ଦୋଳନ ଓ ଗାନ୍ଧୀଜୀ

୧୯୩୯ ସେପ୍ଟେମ୍ବର ମାସରେ ଦ୍ୱିତୀୟ ମହାଯୁଦ୍ଧ ଆରମ୍ଭ ହୋଇଗଲା । ଗତ ଥର ଯୁଦ୍ଧରେ ଗାନ୍ଧୀଜୀ ବ୍ରିଟିଶ ସରକାରଙ୍କ ସହିତ ସହଯୋଗ କରିଥିଲେ, ମାତ୍ର ଏଥର ସେ ସ୍ପଷ୍ଟଭାବରେ ଘୋଷଣା କଲେ ଯେ ସମସ୍ତ ଯୁଦ୍ଧ ମୋ ମତରେ ଭୁଲ । ମାତ୍ର ବ୍ରିଟେନର ଧ୍ୱଂସରୁ ଆମେ ଆମ ସ୍ୱାଧୀନତା ପାଇବାକୁ ଚାହୁଁନାହୁଁ । ମିତ୍ରପକ୍ଷଙ୍କ ପ୍ରତି ମୋର ସହାନୁଭୂତି ରହିଛି । କଂଗ୍ରେସ କେତେକ ସର୍ତ୍ତରେ ବ୍ରିଟିଶ ସରକାରଙ୍କ ସଙ୍ଗେ ସହଯୋଗ କରିବାକୁ ପ୍ରଥମାବସ୍ଥାରେ ଚାହିଁଥିଲେ, ମାତ୍ର ଗାନ୍ଧୀଜୀ କଂଗ୍ରେସ ସହିତ ଏକମତ ହୋଇ ନ ଥିଲେ । ଯାହା ହେଉ, ବ୍ରିଟିଶ ସରକାର ସେ ସର୍ତ୍ତରେ ରାଜି ହେଲେ ନାହିଁ । ଏହା ଭିତରେ ଜାପାନ ଦ୍ରୁତଗତିରେ ମାଡ଼ି ଆସିଲା । ବ୍ରିଟିଶ ଶାସକଙ୍କର ଜାପାନର ଅଗ୍ରଗତିକୁ ପ୍ରତିରୋଧ କରିବା ଭଳି ଶକ୍ତି ନ ଥିଲା । ଲୋକେ କ୍ରମଶଃ ଅସ୍ଥିର ଓ ଅଧୀର ହୋଇ ପଡ଼ିଥିଲେ । ଗାନ୍ଧୀଜୀ ଏହି ଅବସ୍ଥା ଦେଖି ଆଶଙ୍କା କଲେ ଯେ ଏହି ଯେଉଁ ଉତ୍ତେଜନା ସୃଷ୍ଟି ହେଉଛି, ତାକୁ ଯଦି ଅହିଂସ ପ୍ରତିରୋଧ ସଂଗଠନରେ ପରିଣତ କରା ନ ଯାଏ, ତା ହେଲେ ହିଂସାତ୍ମକ କାଣ୍ଡମାନ ଘଟିବାର ସମ୍ଭାବନା ରହିଛି । ସେଥିପାଇଁ ଗାନ୍ଧୀଜୀ "ଭାରତ ଛାଡ଼" ଆହ୍ୱାନ ଦେଲେ । ନିଖିଳ ଭାରତ କଂଗ୍ରେସ କମିଟୀ ୧୯୪୨ ଅଗଷ୍ଟ ୭ ତାରିଖରେ ଏହି "ଭାରତ ଛାଡ଼"କୁ ଭିତ୍ତି କରି ଏକ ଐତିହାସିକ ପ୍ରସ୍ତାବ ଗ୍ରହଣ କଲେ । ୯ ତାରିଖ ଦିନ ସକାଳୁ ଗାନ୍ଧୀଜୀ ଓ ଭାରତର ବହୁ ନେତୃସ୍ଥାନୀୟ ବ୍ୟକ୍ତି

ଗିରଫ ହୋଇଗଲେ । ଗାନ୍ଧୀଜୀଙ୍କୁ ବମ୍ବେର ଆଗାଖାଁ ରାଜ-ପ୍ରାସାଦରେ ରଖାଗଲା । ଏହା ପରେ ସମଗ୍ର ଭାରତରେ ବହୁ ହିଂସାତ୍ମକ ଘଟଣାମାନ ଘଟିଲା ଏବଂ ଇଂରେଜ ସରକାରଙ୍କ ପକ୍ଷରୁ ଅତ୍ୟାଚାର ଓ ଦମନ ଲୀଳା ଚାଲିଲା । ଏହି ସବୁ ହିଂସାକାଣ୍ଡ ପାଇଁ ବ୍ରିଟିଶ ସରକାର ଗାନ୍ଧୀଜୀଙ୍କୁ ଦାୟୀ କରିଥିଲେ ଏବଂ ଏ ସମ୍ପର୍କରେ ତତ୍କାଳୀନ ବଡ଼ଲାଟଙ୍କ ସଙ୍ଗେ ବହୁ ଚିଠିପତ୍ର ଆଦାନପ୍ରଦାନ ପରେ ଗାନ୍ଧୀଜୀ ୨୧ ଦିନ ଉପବାସ କଲେ । ଏହି ଉପବାସ ଫଳରେ ଗାନ୍ଧୀଜୀଙ୍କ ଅବସ୍ଥା ସଂକଟାପନ୍ନ ହୋଇଯାଇଥିଲା; ମାତ୍ର ସେ କ୍ରମଶଃ ସୁସ୍ଥ ହେଲେ । ଗିରଫ ପରେ ପରେ ସେ ଘୋର ମାନସିକ ଅଶାନ୍ତି ଭିତରେ କାଳ କାଟିଥିଲେ । ତାଙ୍କ ଗିରଫଦାରିର ୬ ଦିନ ପରେ କସ୍ତୁରବାଙ୍କ ପରଲୋକ ହୋଇଗଲା ଏବଂ ୧୯୪୩ରେ ତାଙ୍କ ସେକ୍ରେଟେରୀ ମହାଦେବ ଦେଶାଇଙ୍କ ପରଲୋକ ହୋଇଗଲା । ଏଥିରେ ଗାନ୍ଧୀଜୀ ଅତ୍ୟନ୍ତ ବ୍ୟଥିତ ହୋଇ ପଡ଼ିଥିଲେ । ଗାନ୍ଧୀଜୀଙ୍କ ଶାରୀରିକ ଅବସ୍ଥା ଉଦ୍‌ବେଗଜନକ ଥିବାଯୋଗୁଁ ବାହାରେ ପ୍ରବଳ ଆନ୍ଦୋଳନ ହେବାରୁ ମେ ୬ ତାରିଖରେ ଗାନ୍ଧୀଜୀଙ୍କୁ ଖଲାସ କରି ଦିଆହେଲା ।

## ସ୍ୱାଧୀନତା ଓ ଗାନ୍ଧୀଜୀଙ୍କ ମହାପ୍ରୟାଣ

ଭାରତରେ ରାଜନୈତିକ ଅବସ୍ଥା ବ୍ରିଟିଶ ସରକାରଙ୍କ ପକ୍ଷରେ କ୍ରମଶଃ ଉଦ୍‌ବେଗଜନକ ହୋଇ ଉଠିଲା । ଦୁର୍ଭିକ୍ଷଯୋଗୁ ହଜାର ହଜାର ଲୋକ ପ୍ରାଣ ହରେଇଲେ । ବ୍ରିଟିଶ ସରକାର ଅବସ୍ଥା ସମ୍ଭାଳି ନ ପାରି ଭାରତକୁ ସ୍ୱାଧୀନ କରିଦେବା ପାଇଁ ଆଲୋଚନା ଚଳେଇଲେ । କାବିନେଟ୍ ମିଶନ ପଠାଇଥିଲେ । ମାତ୍ର ଆଲୋଚନା ଫଳରେ ହିନ୍ଦୁ ମୁସଲମାନଙ୍କ ଭିତରେ ରାଜନୀତି



ବାପୁଜୀ ଓ ତାଙ୍କ ରାଜନୈତିକ ଉତ୍ତରାଧିକାରୀ ଶ୍ରୀ ଜବାହରଲାଲ



ବାପୁଜୀ
ଶିଶୁଙ୍କ ସଙ୍ଗେ ଶିଶୁ



ଭାରତମନ୍ତ୍ରୀ ପେଥିକ୍ ଲରେନ୍ସଙ୍କ ସହିତ ବାପୁଜୀ



ବାପୁଜୀଙ୍କ ଦ୍ୱାରା
କମଲା ନେହେରୁ ହାସ୍‌ପାତାଳର ଭିତ୍ତି ସ୍ଥାପନ

ହୋଇ ପାରିଲା ନାହିଁ । ୧୯୪୬ ଅଗଷ୍ଟରେ ମଧ୍ୟବର୍ତ୍ତୀକାଳୀନ ସରକାର ଗଠନ ନିମନ୍ତେ ନିମନ୍ତ୍ରଣ କଲେ । ଏହା ପରେ ପରେ ସାଂପ୍ରଦାୟିକ ପରିସ୍ଥିତି ଶୋଚନୀୟ ହୋଇ ପଡ଼ିଲା । ବଙ୍ଗଳାରେ ରକ୍ତପାତ ଚାଲିଲା । ବିଶେଷ ଭାବରେ ନୂଆଖାଲିରେ ସଂଖ୍ୟାନ୍ୟୁନ ହିନ୍ଦୁଙ୍କ ଉପରେ ଜୁଲମ ଓ ହିଂସାକାଣ୍ଡମାନ ଚାଲିଲା । ଗାନ୍ଧୀଜୀ ଏଥିରେ ଚୁପ୍ ହୋଇ ବସି ପାରିଲେ ନାହିଁ । ସେ ନିଜେ ସେଠାରେ ଯାଇ 'ପଦଯାତ୍ରା' କଲେ ଏବଂ ଦୁଇ ସଂପ୍ରଦାୟଙ୍କ ଭିତରେ ବନ୍ଧୁତ୍ୱ ସ୍ଥାପନ ପାଇଁ ଅଭିଯାନ ଚଳାଇଲେ । ୪ ମାସ ପର୍ଯ୍ୟନ୍ତ ସେ ସେଠାରେ ରହିଥିଲେ । ତା ପରେ ସେ ବିହାର ଯାଇ ସେଇ ଶାନ୍ତି–ବାର୍ତ୍ତା ପ୍ରଚାର କରିଥିଲେ ।

କଂଗ୍ରେସ ଶେଷରେ ଭାରତ ଭାଗ ଭାଗ ହେବା ପାଇଁ ରାଜି ହେଲା । ପାକିସ୍ଥାନ ଭାରତରୁ ଅଲଗା ହୋଇଗଲା । ଭାରତ ସ୍ୱାଧୀନ ହେଲା । କିଛି ଦିନ ପରେ କଲିକତାରେ ଭୀଷଣ ସାଂପ୍ରଦାୟିକ ଦଙ୍ଗା ଚାଲିଲା ଏବଂ ଏହାକୁ ବନ୍ଦ କରିବା ନିମନ୍ତେ ଗାନ୍ଧୀଜୀ ଅନଶନ କଲେ । ଫଳରେ ସବୁ ସଂପ୍ରଦାୟ ମିଶି ଏହା ବନ୍ଦ କରିବା ନିମନ୍ତେ ପ୍ରତିଶ୍ରୁତି ଦେବାରୁ ଗାନ୍ଧୀଜୀ ଅନଶନ ଭଙ୍ଗ କରିଥିଲେ । ଦିଲ୍ଲୀରେ ସାଂପ୍ରଦାୟିକ ପରିସ୍ଥିତି ଅତି ଶୋଚନୀୟ ହୋଇଗଲା ଓ ବିଭତ୍ସ କାଣ୍ଡମାନ ଘଟିଲା । ଗାନ୍ଧୀଜୀ ଦିଲ୍ଲୀରେ ଯାଇ ରହିଲେ । ସେ ପ୍ରତିଦିନ ପ୍ରାର୍ଥନା କରିବାକୁ ଚାଲି ଚାଲି ଆସନ୍ତି ଏବଂ ପ୍ରାର୍ଥନା ପରେ ସାଂପ୍ରଦାୟିକ ପରିସ୍ଥିତି ଓ ଅନ୍ୟାନ୍ୟ ସମସ୍ୟା ସଂପର୍କରେ ଉପଦେଶମାନ ଦିଅନ୍ତି । ଅବସ୍ଥାର କୌଣସି ଉନ୍ନତି ନ ଦେଖି ଗାନ୍ଧୀଜୀ ଅନଶନ ଆରମ୍ଭ କଲେ । ଅନଶନର ଦ୍ୱିତୀୟ ଦିନ ପ୍ରାର୍ଥନା କରୁଥିଲା ବେଳେ ଗୋଟାଏ ବୋମା ତାଙ୍କ ପ୍ରତି ଲକ୍ଷ୍ୟ କରି ନିକ୍ଷେପ କରାଯାଇଥିଲା; ମାତ୍ର ସୌଭାଗ୍ୟକ୍ରମେ ତାହା

ଲକ୍ଷ୍ୟଭ୍ରଷ୍ଟ ହୋଇଯାଇଥିଲା । କିନ୍ତୁ ଯାହା ହେଲେ ମଧ୍ୟ ଗାନ୍ଧୀଜୀ କୌଣସି ପୋଲିସ ସାହାଯ୍ୟ ନେବାକୁ ରାଜି ହୋଇ ନ ଥିଲେ, ପୂର୍ବପରି ଖୋଲା ପଡ଼ିଆରେ ପ୍ରାର୍ଥନା ସଭା କରୁଥିଲେ । ଏହି ବୋମା ଦୁର୍ଘଟଣାର ୧୦ ଦିନ ପରେ ପ୍ରାର୍ଥନା ସଭା ନିମନ୍ତେ ତରତର ହୋଇ ଯାଉଥିବାବେଳେ ନାଥୁରାମ ଗଡ଼ସେ ନାମକ ଜଣେ ହିନ୍ଦୁ ଯୁବକ ଗାନ୍ଧୀଜୀଙ୍କ ଛାତିକୁ ୩ ଟ୍ରେଟ ଗୁଳି ମାରିଥିଲେ । ଗାନ୍ଧୀଜୀ 'ହେ ରାମ' ବୋଲି କହି ଭୂମିରେ ପଡ଼ିଯାଇଥିଲେ । ସମଗ୍ର ବିଶ୍ୱକୁ ଶୋକସନ୍ତପ୍ତ କରି ମହାମାନବ ମହାତ୍ମା ଗାନ୍ଧୀ ଇହଧାମରୁ ବିଦାୟ ନେଲେ । ସେ ଦିନ ୧୯୪୮ ଜାନୁଆରୀ ୩୦ ତାରିଖ ।

## ମହାତ୍ମା ଗାନ୍ଧୀଙ୍କ ବିଚାରଧାରା

ମହାତ୍ମା ଗାନ୍ଧୀ କେବଳ ରାଜନୀତିଜ୍ଞ ନ ଥିଲେ । ସେ ଜଣେ ମହାନ୍ ସାଧୁ, ସଂସ୍କାରକ, ଅର୍ଥଶାସ୍ତ୍ରୀ ଓ ସମାଜଶାସ୍ତ୍ରୀ ମଧ୍ୟ ଥିଲେ । ଗୋଟିଏ ସ୍ଥୂଳଦୃଷ୍ଟିରେ ସେ ଅତୀତ, ବର୍ତ୍ତମାନ ଏବଂ ଭବିଷ୍ୟତ—ତିନି କାଳର ପର୍ଯ୍ୟବେକ୍ଷଣ କରି ପାରୁଥିଲେ । ତାଙ୍କର ତୀକ୍ଷ୍ଣ ଦୃଷ୍ଟିରେ ସେ ଅତୀତକୁ ଗଭୀରେଇ ଦେଖି ପାରୁଥିଲେ ଓ ଅତି ଶୀଘ୍ର ଭବିଷ୍ୟତର ଚୂଡ଼ା ନିର୍ଦ୍ଧାରଣ କରି ପାରୁଥିଲେ । ଜୀବନର ପ୍ରତ୍ୟେକ ପଦକ୍ଷେପରେ ସେ ନ୍ୟାୟ ଓ ସତ୍ୟକୁ ଆଶ୍ରୟ କରୁଥିଲେ । ତାଙ୍କ ସମ୍ମୁଖରେ କେତେକ ବ୍ୟାପକ ସିଦ୍ଧାନ୍ତ ଥିଲା । ସେହି ସିଦ୍ଧାନ୍ତପୂର୍ଣ୍ଣ ପଥରେ ଅଗ୍ରସର ହୋଇ ସେ ମନୁଷ୍ୟ ସମାଜର ପୁନର୍ଗଠନରେ ନିଜକୁ ନିୟୋଜିତ କରୁଥିଲେ । ତାଙ୍କର ସାରା ଜୀବନ ଜଣେ ବୈଜ୍ଞାନିକର ଜୀବନ ସଦୃଶ ଥିଲା । ସେ ସର୍ବଦା ସତ୍ୟ-ବିଜ୍ଞାନର ଅନୁସନ୍ଧାନରେ ବ୍ରତୀ ଥିଲେ ଓ ତାହାକୁ ବ୍ୟବହାର କରି ଲୋକଙ୍କ ସମ୍ମୁଖରେ ଉପସ୍ଥାପିତ କରୁଥିଲେ ।

ଗାନ୍ଧୀଜୀ ସର୍ବଦା ଭାବୁଥିଲେ ଯେ, ପରାଧୀନ ହୋଇ ରହିଲେ ଭାରତର ତ୍ରିଶ କୋଟି ନରନାରୀଙ୍କର ବାସ୍ତବିକ ଉନ୍ନତି କଦାପି ହୋଇ ପାରିବ ନାହିଁ । ତେଣୁ ଭାରତର ରାଜନୀତିକ ସ୍ୱାଧୀନତାକୁ ସେ ଜୀବନର ଲକ୍ଷ୍ୟସ୍ଥଳରୂପେ ଧରି ନେଇଥିଲେ । ଭାରତର 'ଦଳିତ, ପୀଡ଼ିତ ଏବଂ ଅବହେଳିତ ମାନବ ସମାଜକୁ ସେ ଦେଖିଥିଲେ । ତ୍ରିଶ କୋଟି ଭାରତୀୟଙ୍କ ଭିତରେ ସେ ନିଜର ଆତ୍ମାର ଅସ୍ତିତ୍ୱ ଅନୁଭବ କରି ସେହି ଆତ୍ମାର ସଙ୍କଟକୁ ଦୂର କରିବାର ବ୍ରତ ଗ୍ରହଣ କରିଥିଲେ । କେବଳ ସେତିକି ନୁହେଁ; ସେ ଭଲରୂପେ ଜାଣିଥିଲେ ଯେ ଭାରତର ସାମାଜିକ ଓ ଆର୍ଥିକ ବ୍ୟବସ୍ଥା ଅତ୍ୟନ୍ତ ଶୋଚନୀୟ ହୋଇ ପଡ଼ିଛି । ଏଣୁ ଯେତେବେଳ ପର୍ଯ୍ୟନ୍ତ ଭାରତକୁ ନୂଆ କରି ଗଠନ କରା ନ ହୋଇଛି, ସେତେବେଳ ଯାଏ ରାଜନୈତିକ ସ୍ୱାଧୀନତା ପାଇ ମଧ୍ୟ ସେ ସୁଖୀ ଓ ସମୃଦ୍ଧ ହୋଇ ପାରିବ ନାହିଁ । ଏଥିପାଇଁ ସେ ଏପରି ଉପାୟ ସବୁ ଖୋଜି ବାହାର କଲେ, ଏପରି ରଚନାତ୍ମକ କାର୍ଯ୍ୟସବୁ ଆରମ୍ଭ କଲେ, ଯାହାର କି ଦୁଇ ଗୁଣ ମହତ୍ତ୍ୱ ଥିଲା । ରଚନାତ୍ମକ କାର୍ଯ୍ୟଦ୍ୱାରା ସେଗୁଡ଼ିକର ପରିବର୍ତ୍ତନ କରିବାର ସଂକଳ୍ପ କରି ସେ କାର୍ଯ୍ୟ ଆରମ୍ଭ କଲେ । ଖଦଡ଼ ଆନ୍ଦୋଳନ, ଗ୍ରାମସଂସ୍କାର, ସ୍ୱଦେଶୀ ଆନ୍ଦୋଳନ, ଅସ୍ପୃଶ୍ୟୋଦ୍ଧାରଣ, ନାରୀ ଜାଗରଣ, ନିଶା ନିବାରଣ, ରାଷ୍ଟ୍ରୀୟ ଶିକ୍ଷା ଓ ରାଷ୍ଟ୍ରଭାଷା ପ୍ରଚାର ପ୍ରଭୃତି କାମ ଉପରେ ଗାନ୍ଧୀଜୀ ସବୁଠାରୁ ବେଶୀ ଜୋର ଦେଲେ । ସେ ଏହି ଦୃଷ୍ଟିରୁ ବିଭିନ୍ନ ପ୍ରକାରର ସଂସ୍ଥାଗୁଡ଼ିକୁ ଗଠନ କଲେ ଏବଂ ନାନାପ୍ରକାର ଆନ୍ଦୋଳନ ଚଳାଇଲେ ।

ତାଙ୍କର କାର୍ଯ୍ୟପ୍ରଣାଳୀ ଅହିଂସାତ୍ମକ ହେବା ସଙ୍ଗେ ସଙ୍ଗେ ଅତ୍ୟନ୍ତ ସରଳ ହେଉଥିଲା । ଅଥଚ ତହିଁରେ ବ୍ୟାବହାରିକତାର

ଅଭାବ ନ ଥିଲା । ଗାନ୍ଧୀଜୀ ଏହି ଅର୍ଥରେ ପକ୍‌କା ଯଥାର୍ଥବାଦୀ ଥିଲେ । କୌଣସି କାମକୁ ଆରମ୍ଭ କରିବା ପୂର୍ବରୁ ସେ ତାହା ବିଷୟରେ ବହୁତ ଭାବୁଥିଲେ । ବ୍ୟାବହାରିକ କଠିନତାଗୁଡ଼ିକ ବିଷୟରେ ସେ ଗମ୍ଭୀରତାର ସହିତ ବିଚାର କରୁଥିଲେ ଏବଂ ବିପରୀତ ଅବସ୍ଥାରେ ନିଜର ଭୁଲକୁ ସଂଶୋଧନ କରିବା ନିମିତ୍ତ ସେ ସର୍ବଦା ପ୍ରସ୍ତୁତ ରହୁଥିଲେ । ଆଡ଼ମ୍ବର, ମିଥ୍ୟା ପ୍ରତିଷ୍ଠା, ଶସ୍ତା ଲୋକପ୍ରିୟତାଠାରୁ ସେ ବହୁଦୂରରେ ଥିଲେ । ଏହାର ପରିଣାମ ସ୍ୱରୂପ ଯେଉଁ ଲୋକମାନେ ଆରମ୍ଭରେ ତାଙ୍କର କାର୍ଯ୍ୟପ୍ରଣାଳୀକୁ ଉପହାସ କରୁଥିଲେ, ସେହିମାନେ କେତେକ ସମୟ ପରେ ତାଙ୍କର ସଫଳତାରେ ଏତେ ପ୍ରଭାବିତ ହୋଇ ଯାଉଥିଲେ ଯେ, ଆଦର ଓ ସମ୍ମାନରେ ସେମାନଙ୍କର ମସ୍ତକ ତାଙ୍କର ପାଦତଳେ ଅବନତ ହୋଇଯାଉଥିଲା ।

ଧନ-ସମ୍ପତ୍ତି, ପାରିବାରିକ ସମ୍ମାନ ବା ଅଗାଧ ବିଦ୍‌ବତ୍ତା— ଏଗୁଡ଼ିକ ମଧ୍ୟରୁ କୌଣସି ଗୋଟିକର ଲୋଭ ଗାନ୍ଧୀଜୀଙ୍କୁ ବିଚଳିତ କରି ପାରୁ ନ ଥିଲା । ସତ୍ୟର ମହତ୍ତ୍ୱ ଉପଲବ୍ଧି କରି ସେଥିପାଇଁ ସେ ନିଜର ଜୀବନ ଦାନ କରିବାକୁ ପ୍ରସ୍ତୁତ ଥିଲେ । ସତ୍ୟ ରକ୍ଷାକରିବା ନିମନ୍ତେ ଥରେ ଦୃଢ଼ପ୍ରତିଜ୍ଞ ହୋଇସିବା ପରେ ତାଙ୍କୁ ବିଚଳିତ କରିବା ଭଳି ଶକ୍ତି ସଂସାରରେ କିଛି ନ ଥିଲା । ଏହାର ପରିଣାମ ସ୍ୱରୂପ ଦେଖୁ ଦେଖୁ ରାଜନୀତିଜ୍ଞ ନେତାମାନେ ତାଙ୍କର ନେତୃତ୍ୱ ସ୍ୱୀକାର କରିନେଲେ । ଶ୍ରେଷ୍ଠ ଧନପତିମାନେ ସେମାନଙ୍କର ସର୍ବସ୍ୱ ତାଙ୍କର ଚରଣତଳେ ଉତ୍ସର୍ଗ କରିଦେଲେ ଏବଂ ବଡ଼ ବଡ଼ ଧାର୍ମିକ ନେତାମାନେ ତାଙ୍କର ବ୍ୟବସ୍ଥା ସମ୍ମୁଖରେ ମୁହୂର୍ତ୍ତିକ ନିମିତ୍ତ ସୁଦ୍ଧା ଛିଡ଼ାହୋଇ ପାରିବାକୁ ସାହସ କଲେ ନାହିଁ ।

ଗାନ୍ଧୀଜୀଙ୍କଦ୍ୱାରା ସ୍ୱିକୃତ ହୋଇଥିବା ଆର୍ଥିକ ଓ ସାମାଜିକ ବ୍ୟବସ୍ଥା ବା ଯୋଜନାର ବଳରେ ଆମ୍ଭେମାନେ ଆମ୍ଭମାନଙ୍କ ଦେଶର ପୁନଃନିର୍ମାଣ କରି ପାରିବୁଁ । ତଦ୍ଦ୍ୱାରା ଦେଶରୁ ଦାରିଦ୍ର୍ୟ, ମୂର୍ଖତା, ଅକର୍ମଣ୍ୟତା, କ୍ଷୁଧା ଓ ରୋଗମାନଙ୍କର ସମୁଳୋତ୍ପାଟନ କରାଯାଇ ପାରିବ ଏବଂ ସମଗ୍ର ଦେଶ ସୁଖୀ, ସମୃଦ୍ଧ ଓ ଐଶ୍ୱର୍ଯ୍ୟଶାଳୀ ହୋଇପାରିବ । ସେହି ପରିସ୍ଥିତିରେ ଚତୁର୍ଦ୍ଦିଗରେ ଧନଧାନ୍ୟପରିପୂର୍ଣ୍ଣ ଗ୍ରାମନଗରମାନ ଆମ୍ଭମାନଙ୍କର ଆଖିଆଗରେ ନାଚିଉଠିବ । ମାରାତ୍ମକ ରୋଗ ଓ ମହାମାରୀର ଚିହ୍ନ ସୁଦ୍ଧା ରହିବ ନାହିଁ ଏବଂ ଭାରତବର୍ଷ ସୁରକ୍ଷିତ, ସୁସ୍ଥ ଓ ଚରିତ୍ରବାନ୍ ନାଗରିକମାନଙ୍କର ଦେଶ ହେବ ।

## ଖଦଡ଼

ଭାରତର ଦାରିଦ୍ର୍ୟ ଗାନ୍ଧୀଜୀଙ୍କ ଜୀବନକୁ ବିଶେଷରୂପେ ଆଲୋଡ଼ିତ କରିଥିଲା । ଏଥିନିମିତ୍ତ ସେ ଧନ-ସମ୍ପତ୍ତିରୁ ନିଜର ସମସ୍ତ ସମ୍ପର୍କ ତୁଟାଇ ଦେଇ ସରଳ ଜୀବନ ଯାପନ କଲେ । କୋଟି କୋଟି ଦେଶବାସୀ ଲଜ୍ଜା ନିବାରଣ ନିମନ୍ତେ ଯଥେଷ୍ଟ ବସ୍ତ୍ର ପାଉ ନ ଥିଲେ । ଏହିମାନଙ୍କଠାରୁ ଗାନ୍ଧୀଜୀ ଲେଙ୍ଗୋଟି ପିନ୍ଧିବାର ପ୍ରେରଣା ପାଇଥିଲେ । ଗରିବ ଭାରତବାସୀମାନଙ୍କ ନିମନ୍ତେ ତାଙ୍କର ହୃଦୟରେ ଅଶେଷ ମମତା ଥିଲା । ଏପରିକି ସେ ନିଜକୁ ଦରିଦ୍ର-ନାରାୟଣଙ୍କର ଉପାସକ ବୋଲି ଘୋଷଣା କଲେ । ସେ ନିଜର ଜୀବନଯାପନ ପ୍ରଣାଳୀକୁ ନିତାନ୍ତ ସରଳ କରି ପକାଇଲେ ଏବଂ ସେମାନଙ୍କ ଅବସ୍ଥା ସଂଶୋଧନ କରିବା ଚେଷ୍ଟାରେ ନିଜ ଜୀବନର ପ୍ରତ୍ୟେକ ମୁହୂର୍ତ୍ତ ଲଗାଇଦେଲେ ।

ଭାରତର ଦାରିଦ୍ର୍ୟ ସମସ୍ୟାକୁ ଗାନ୍ଧୀଜୀ କେବଳ ଭାବପ୍ରବଣତାର ସହିତ ଦେଖି ନ ଥିଲେ । ତାହା ପଛରେ ତାଙ୍କର ଗମ୍ଭୀର ଚିନ୍ତନ

ଥିଲା । ସେ ଭାରତର ଦାରିଦ୍ର୍ୟ ପଛରେ ଲୁଚିଥିବା ରହସ୍ୟକୁ ବୁଝିଥିଲେ । ସେ ଦେଖିଲେ ଯେ, ଭାରତର ବ୍ୟବସାୟ ତାର ହାତରୁ ଖସି ଚାଲିଯାଇଛି । ଏଣୁ ଭାରତ ଦରିଦ୍ରତାରେ କଲବଲ ହେଉଅଛି । ତାହାର ଉଦ୍‌ଯୋଗ-ଧନ୍ଦା ସବୁ ତା ହାତରୁ ଛଡ଼ାଇ ନିଆଯାଇଛି ।

ଗାନ୍ଧୀଜୀ ନିଜେ ଲେଖିଅଛନ୍ତି, "ଯେଉଁ ଦିନଠାରୁ ନ ବୁଝି, ନ ବିଚାରି, ନିଜର ମନମାଫିକ ନିଷ୍ଠୁରତା ଦ୍ୱାରା ଅନେକ ଗୁଡ଼ିଏ କୁଟୀର ଶିଳ୍ପ ଉଦ୍‌ଯୋଗର ଓ ତତ୍‌ସଂପୃକ୍ତ ଅନେକ ହସ୍ତଶିଳ୍ପର ସର୍ବନାଶ କରାଯାଇଛି, ସେହି ଦିନଠାରୁ ଆମର ଗ୍ରାମମାନଙ୍କର ବୁଦ୍ଧି ଓ ତେଜ ନଷ୍ଟ ହୋଇଯାଇଛି । ସେ ସବୁ ନିସ୍ତେଜ ଓ ନିଷ୍ପ୍ରାଣ ହୋଇ ପଡ଼ିଅଛନ୍ତି ଓ ସେମାନଙ୍କର ଅବସ୍ଥା ଭୋକ ଉପାସରେ ଦୁର୍ବଳ ମୁମୂର୍ଷୁମାନଙ୍କ ଭଳି ହୋଇଯାଇଅଛି ।"

ଗାନ୍ଧୀଜୀ ଦେଖିଲେ ଯେ, ଯେତେବେଳ ଯାଏ ଦେଶରେ ସମସ୍ତଙ୍କ ପାଇଁ ବସ୍ତ୍ର ତିଆରି କରିବାର କୌଣସି ବ୍ୟାବହାରିକ ଯୋଜନା ଗଠିତ ନ ହୋଇଛି, ସେତେବେଳ ଯାଏ ବିଦେଶୀ ବସ୍ତ୍ର ବର୍ଜନ ସଫଳ କରାଯାଇ ପାରିବ ନାହିଁ । ଏଥିସକାଶେ ଗାନ୍ଧୀଜୀ ଖଦଡ଼ ଲୁଗା ତିଆରି କରିବାର ଯୋଜନା ଗଠନ କଲେ ଏବଂ ଚରଖାକୁ ଆଶ୍ରୟ କଲେ । ସୂତା କାଟିବା ସମସ୍ତଙ୍କ ପକ୍ଷରେ ଏକ ପବିତ୍ର କର୍ତ୍ତବ୍ୟ ବୋଲି ସ୍ୱୀକୃତ ହେଲା ଏବଂ କଟା ଓ ବୁଣା ଆନ୍ଦୋଳନ ଚାଲିଲା । ସ୍ୱାଧୀନତା ଆନ୍ଦୋଳନ ସଙ୍ଗେ ସଙ୍ଗେ ଏହି ଆର୍ଥିକ ସ୍ୱାବଲମ୍ବନ ଆନ୍ଦୋଳନ ଘନିଷ୍ଠ ଭାବରେ ଜଡ଼ିତ । ଏତଦ୍ୱାରା ଭାରତର ହଜାର ହଜାର ଗ୍ରାମରେ ବାସ କରୁଥିବା ଲକ୍ଷ ଲକ୍ଷ ତନ୍ତୀଙ୍କୁ ଜୀବିକା ମିଳିଗଲା । ବ୍ରିଟିଶ ସରକାର ଭାରତୀୟ

ଲୋକମତର ଦୃଢ଼ତା ଓ ଶକ୍ତି ଏବଂ ଗାନ୍ଧୀଜୀଙ୍କର ମହାନ୍ ବ୍ୟକ୍ତିତ୍ୱ ଅନୁଭବ କଲେ । ଭାରତର ସ୍ୱାଧୀନତା ନିମନ୍ତେ ଲଢ଼ୁଥିବା ଦେଶଭକ୍ତମାନଙ୍କୁ ଆତ୍ମନିର୍ଭରଶୀଳତାର ପ୍ରତୀକ ସ୍ୱରୂପ ଜାତୀୟ ପୋଷାକ ମିଳିଲା । ଗାନ୍ଧୀଜୀଙ୍କ କଥାରେ ଖଦୀ ଭାରତୀୟ ଜନତାର ଏକତା, ଆର୍ଥିକ ଏକତା ଓ ସମାନତାର ପ୍ରତୀକ ଅଟେ ଏବଂ ଏଥିପାଇଁ ଜବାହରଲାଲଙ୍କର କବିତାମୟ ଭାଷାରେ ତାହା "ହିନ୍ଦୁସ୍ଥାନର ସ୍ୱାଧୀନତାର ପୋଷାକ" ଅଟେ ।

ଏହି କାର୍ଯ୍ୟର ଅଭୂତପୂର୍ବ ସଫଳତା ମୂଳରେ ଗାନ୍ଧୀଜୀଙ୍କ ଯେଉଁ ଲକ୍ଷ୍ୟ ନିହିତ ଥିଲା, ତାହାକୁ ସଫଳତାର ମୂଳମନ୍ତ୍ର କୁହାଯାଇପାରେ । ଯେତେବେଳ ଯାଏ ତାଙ୍କର ଶରୀରରେ ଶକ୍ତି ଥିଲା, ସେ ପର୍ଯ୍ୟନ୍ତ ସେ ସୂତାକଟା ଛାଡ଼ି ନ ଥିଲେ । ଚରଖା ଆନ୍ଦୋଳନର ଇତିହାସକୁ ଗମ୍ଭୀରତାର ସହିତ ପାଠ କରୁଥିବା ଲୋକହିଁ ତାହାର ମହତ୍ତ୍ୱ ବୁଝିପାରିବ । କଂଗ୍ରେସକୁ ଦୃଢ଼ ଓ ଲୋକପ୍ରିୟ କରାଇବାରେ ଚରଖା ଆନ୍ଦୋଳନ ଯେତେ ସାହାଯ୍ୟ କରିଛି, ଅନ୍ୟ କୌଣସି କାର୍ଯ୍ୟକ୍ରମ ସେତେ କରିନାହିଁ ।

ଘରେ ଘରେ ଖଦୀର ପ୍ରବେଶ ହେବାହେତୁ ଲୋକମାନଙ୍କ ମଧ୍ୟରେ ସାମ୍ୟ, ତ୍ୟାଗ ଓ ଏକତାର ଭାବନା ପ୍ରବଳ ହୋଇ ଉଠିଲା । ଜାତୀୟ ସଙ୍ଗୀତମାନଙ୍କରେ ଚରଖା ଓ ଖଦୀକୁ ସ୍ଥାନ ମିଳିଲା ଏବଂ ସେଗୁଡ଼ିକ ବୀରତ୍ୱ ଓ ବଳିଦାନର ଗୀତ ସଦୃଶ ଲୋକମାନଙ୍କର ମାନସ-ପଟରେ ଲିଖିତ ହୋଇଗଲା । ସେଗୁଡ଼ିକ ଚତୁର୍ଦ୍ଦିଗରେ ଦେଶଭକ୍ତିର ଲହର ସୃଷ୍ଟି କରାଇ ଦେଲା; ଯଦ୍ଦ୍ୱାରା ଆବାଳ-ବୃଦ୍ଧ-ବନିତା ସମସ୍ତେ ପ୍ରଭାବିତ ହେଲେ । ଏହା ଦେଖିଲେ, ଗାନ୍ଧୀଜୀଙ୍କର ଏହି କଥନ ଅକ୍ଷରେ ଅକ୍ଷରେ ସତ୍ୟ ବୋଲି ଜଣା

ପଡ଼େ—"ଖଦ୍ଦର ଉଦ୍ଦେଶ୍ୟ ଦେଶରେ ସବୁ ଲୋକଙ୍କ ମଧ୍ୟରେ ଆର୍ଥିକ ସ୍ୱତନ୍ତ୍ରତା ଓ ସମାନତା ଆରମ୍ଭ କରିବା ।"

ଗାନ୍ଧୀଜୀ ଖଦ୍ଦରକୁ ସମ୍ପୂର୍ଣ୍ଣଭାବରେ ସ୍ୱାବଲମ୍ବୀ ଉଦ୍‌ଯୋଗ କରିବାକୁ ଇଚ୍ଛା କରୁଥିଲେ । ସେ ଚାହୁଁଥିଲେ, ଯେଉଁ ଜାଗାରେ କପା ଉତ୍ପନ୍ନ ହୋଇପାରିବ, ସେଠିକାର ପ୍ରତ୍ୟେକ କୃଷକ ତା ଜମିରେ କପା ଉତ୍ପାଦନ କରୁ । ତାହାହେଲେ ସୂତା ନିମନ୍ତେ ତାକୁ ପର ଉପରେ ନିର୍ଭର କରିବାକୁ ପଡ଼ିବ ନାହିଁ । ଚରଖା ପ୍ରଭୃତିର ସାଧନରେ ସେ ଗବେଷଣା ଓ ନୂତନତ୍ୱକୁ ପସନ୍ଦ କରୁଥିଲେ । ଏହି ସବୁର ବଳରେ ମଫସଲ ଲୋକମାନେ ସେହି ଚରଖା ତିଆରି ଓ ତାହାର ମରାମତି ନିଜେ ନିଜେ କରିପାରୁଥିଲେ । ଏହି ଦୃଷ୍ଟିରୁ ସେ ଧନୁଷ୍ଟକଳୀକୁ ବିଶେଷରୂପେ ଉତ୍ସାହିତ କରୁଥିଲେ, କାରଣ ଏଥିରେ କୌଣସି ବାହାର ଶକ୍ତିର ସହାୟତା ଆବଶ୍ୟକ ନ ଥିଲା । ସେ ଚାହୁଁଥିଲେ ଯେ ଆମର ଗାଁ ସବୁ ଯଥେଷ୍ଟ ପରିମାଣରେ ଖଦ୍ଦ ଉତ୍ପାଦନ କରନ୍ତୁ; ଯେପରି କି ସେମାନଙ୍କ ବ୍ୟବହାର ବାଦେ ତାହା ବଳିବ ଓ ଏହି ବଳକା ଖଦ୍ଦ ସହରବାସୀମାନଙ୍କର ଆବଶ୍ୟକତା ପୂରଣ କରିବା ନିମନ୍ତେ ଯଥେଷ୍ଟ ହେବ ।

## ଗ୍ରାମ-ସଂସ୍କାର

ଆମ ଦେଶ ଗ୍ରାମବହୁଳ ଦେଶ । ଦେଶର ସମୃଦ୍ଧି ଗ୍ରାମ-ମାନଙ୍କର ସମୃଦ୍ଧି ଉପରେ ନିର୍ଭର କରେ । ଗାନ୍ଧୀଜୀ ଏହି ରହସ୍ୟକୁ ବୁଝିଥିଲେ ଏବଂ ଅତି ଶୀଘ୍ର ଯେ ଗ୍ରାମମାନଙ୍କର ଉନ୍ନତି ହେବା ଉଚିତ, ଏହି କଥା ଉପରେ ସେ ବିଶେଷ ଜୋର ଦେଉଥିଲେ ।

ଗାନ୍ଧୀଜୀ ଗ୍ରାମମାନଙ୍କର ମଳିନତା ଓ ଦାରିଦ୍ର୍ୟକୁ ଅତ୍ୟନ୍ତ ଗମ୍ଭୀରତାର ସହିତ ଲକ୍ଷ୍ୟ କଲେ ଏବଂ ସେଗୁଡ଼ିକର ଦୂରୀକରଣ ନିମିତ୍ତ ମନୋଯୋଗପୂର୍ବକ କାର୍ଯ୍ୟ କଲେ । ମହାତ୍ମା ଗାନ୍ଧୀ ଭାରତୀୟ ଗ୍ରାମଗୁଡ଼ିକର ଦୁର୍ଦ୍ଦଶା ଦେଖି ସେଗୁଡ଼ିକୁ ଅଳଆ-ମଇଳାର ସ୍ଥାନ ବୋଲି କହୁଥିଲେ । ବାସ୍ତବରେ କଥାଟା ମଧ୍ୟ ଏଇଆ । ଅଧିକାଂଶ ଗ୍ରାମରେ ପ୍ରବେଶ କରିବା ମାତ୍ରେ ଆଖପାଖରେ ବିଛେଇ ହୋଇ ପଡ଼ିଥିବା ଅଳିଆକୁ ଦେଖିଲେ ଯେ କୌଣସି ପରିଷ୍କାରପରିଚ୍ଛନ୍ନତା-ପ୍ରିୟ ଲୋକ ବ୍ୟତିବ୍ୟସ୍ତ ହୋଇ ପଡ଼ିବ । କେଉଁଠାରେ ଆଖି ବୁଜିବାକୁ ପଡ଼ିବ ଓ କେଉଁଠାରେ ଦୁର୍ଗନ୍ଧରୁ ରକ୍ଷା ପାଇବାକୁ ନାକରେ ରୁମାଲ ଦେବାକୁ ପଡ଼ିବ । ଗ୍ରାମବାସୀମାନଙ୍କ ଦାରିଦ୍ର୍ୟ ଯୋଗୁଁ ସେ ଅତ୍ୟନ୍ତ ମର୍ମାହତ ହେଲେ ଏବଂ ଏହି ଅପରିଷ୍କାର ଅପରିଚ୍ଛନ୍ନତା ଓ ଦାରିଦ୍ର୍ୟର ଦୂରୀକରଣ ନିମିତ୍ତ ସେ ଯାରୁପର୍ଯ୍ୟନ୍ତ ଚେଷ୍ଟା କଲେ ।

ସେ ଦେଶସେବୀମାନଙ୍କୁ ପରାମର୍ଶ ଦେଲେ ଯେ ଗ୍ରାମ-ମାନଙ୍କର ଉନ୍ନତି କରିବା ନିମନ୍ତେ ଗ୍ରାମବାସୀମାନଙ୍କର ଏକାଠି ମିଳିମିଶି ଯିବା ଉଚିତ । ତାଙ୍କ ନେତୃତ୍ୱରେ କଂଗ୍ରେସ ଗ୍ରାମୋନ୍ନତିମୂଳକ ମହତ୍ତ୍ୱ କାର୍ଯ୍ୟସବୁ ସାଧନ କରିବାରେ ଚେଷ୍ଟିତ ହେଲା । ଅଖିଳ ଭାରତ କଂଗ୍ରେସର ଅଧିବେଶନ ପଲ୍ଲୀ ଅଞ୍ଚଳରେ ହେବାକୁ ଲାଗିଲା ଏବଂ ଯେତେବେଳେ ପ୍ରଦେଶମାନଙ୍କରେ କଂଗ୍ରେସ ସରକାର ସ୍ଥାପିତ ହେଲା, ସେତେବେଳେ ଗ୍ରାମୋନ୍ନତି-ମୂଳକ ଯୋଜନା ଗଠନ କରାଯାଇ ଗ୍ରାମଗୁଡ଼ିକୁ ଉନ୍ନତ କରିବାର କାମ ମଧ୍ୟ ଆରମ୍ଭ ହେଲା ।

ଗ୍ରାମ-ସଂସ୍କାରକମାନଙ୍କ ପାଇଁ ଗାନ୍ଧୀଜୀ ଆଦର୍ଶ ଜୀବନଯାପନ କରିବା ଉପରେ ବିଶେଷ ଜୋର ଦେଲେ । ଯେଉଁ ଆଶ୍ରମ ବା

କେନ୍ଦ୍ର ସବୁ ଖୋଲାଗଲା, ସେଠାରେ ବ୍ୟକ୍ତିଗତ ଓ ସାମାଜିକ ସ୍ୱାସ୍ଥ୍ୟରକ୍ଷାର ନିୟମ ସବୁ ଅତ୍ୟନ୍ତ କଠୋରତାର ସହିତ ପାଳନ କରାଗଲା । ପରିଷ୍କାର ପରିଚ୍ଛନ୍ନ ରହିବା, ଯେଉଁଠି ଇଚ୍ଛା ସେଇଠି ଅଳିଆ ନ ଫୋପାଡ଼ିବା ଏବଂ ଛେପ ନ ପକେଇବା, ସାଧାରଣ ସ୍ଥାନ ଓ ଜଳାଶୟ ପ୍ରଭୃତି ଅଥବା ଘରର ଆଖପାଖରେ ମଳମୂତ୍ର ତ୍ୟାଗ ନ କରିବା, ଅଳିଆ ମଇଳା ପ୍ରଭୃତିକୁ ଭଲ ସଫା ମାଟିରେ ଘୋଡ଼ାଇ ଦେବା ଆଦି କାର୍ଯ୍ୟ ଆଶ୍ରମବାସୀ କର୍ମୀମାନଙ୍କର ପ୍ରଧାନ କର୍ତ୍ତବ୍ୟରୂପେ ପରିଗଣିତ ହେଲା । ପରିଣାମ ସ୍ୱରୂପ, ଏହି ଆଶ୍ରମ-ଗୁଡ଼ିକର ସମ୍ପର୍କରେ ଆସୁଥିବା ଲୋକେ ସ୍ୱତଃ ଏ ସମସ୍ତ ନିୟମର ଯଥାର୍ଥତା ଅନୁଭବ କଲେ । ଏହି ନିୟମମାନ ପାଳନ କଲେ ଲୋକ ସକଳ ପ୍ରକାର ରୋଗ-ଯନ୍ତ୍ରଣାରୁ ମୁକ୍ତ ହୋଇ ମାର୍ଜିତ ନାଗରିକ ହୋଇପାରିବ—ଏ କଥା ସମସ୍ତେ ହୃଦୟଙ୍ଗମ କଲେ । କେବଳ ସେତିକି ନୁହେଁ, ପୋତା ହୋଇ ରହିଥିବା କୁଟା-କାଠି ପ୍ରଭୃତି ଅଳିଆ ସମୟରେ ଉତ୍କୃଷ୍ଟ ସାରରେ ପରିଣତ ହୋଇ ସୁନା ହୋଇଯାଏ ଏବଂ ମାଟିର କ୍ଷେତ ସୁନାଫସଲ ଉଦ୍‌ଗାରଣ କରେ—ଏହା ମଧ୍ୟ ଲୋକେ ବୁଝିଲେ । ତା ସଙ୍ଗେ ସଙ୍ଗେ ପରିଷ୍କାର ପରିଚ୍ଛନ୍ନ କରିବାର କାମ ଯେ କେବଳ ମେହେନ୍ତରର, ଏ ଭ୍ରମ ଲୋକମାନଙ୍କ ମନରୁ ଦୂର ହେବାକୁ ଲାଗିଲା । ଏହାର ଫଳ ସ୍ୱରୂପ ସାନ ବଡ଼, ଉଚ୍ଚ ନୀଚ ପ୍ରଭୃତିର ଭେଦଭାବ ଲୋକମାନଙ୍କ ମନରୁ ଅପସାରିତ ହେବାକୁ ଲାଗିଲା ।

ଗାନ୍ଧୀଜୀ ବାରମ୍ବାର ଏ କଥା ଘୋଷଣା କରୁଥିଲେ ଯେ, ଆମର ଗ୍ରାମସବୁ ଆମ ଦେଶର ମେରୁଦଣ୍ଡ ସ୍ୱରୂପ ଏବଂ ସେଥିପାଇଁ ସେ ଗ୍ରାମଗୁଡ଼ିକୁ ଆପଣା ରଚନାତ୍ମକ କାର୍ଯ୍ୟର କ୍ଷେତ୍ରରୂପେ ମନୋନୀତ କଲେ । ପରିଷ୍କାର-ପରିଚ୍ଛନ୍ନତା ଉପରେ ଜୋର

ଦେବା ସଙ୍ଗେ ସଙ୍ଗେ କୃଷି, ଖଦି, ଗ୍ରାମୋଦ୍ୟୋଗ, ଶିକ୍ଷା, ଚିକିତ୍ସା ପ୍ରଭୃତିର ଉନ୍ନତି ନିମିତ୍ତ ସେ ମଧ୍ୟ ଉପାୟ ବାହାର କଲେ । ଗାନ୍ଧୀଜୀଙ୍କ ଉପାୟମାନ ସୁଲଭ ଓ ସାଧାରଣ ଧରଣର । କିନ୍ତୁ ତାଙ୍କ କାର୍ଯ୍ୟ କରିବାର ପ୍ରଣାଳୀ ଏପରି ଥିଲା ଯେ, ସେ ସେହି ଉପାୟମାନଙ୍କ ଦ୍ୱାରା ବଡ଼ ବଡ଼ କାମ କରାଇ ନେଉଥିଲେ ।

କୃଷି ଗାଁଲୋକମାନଙ୍କର ପ୍ରଧାନ ଉଦ୍‌ଯୋଗ ଅଟେ । କିନ୍ତୁ ନିମାଗତ ଭାବରେ ଶୋଷଣ ହେବାରୁ ଭାରତର କୃଷକ ଯେପରି ଗରିବ ହୋଇ ପଡ଼ୁଛି, ସେହିପରି ଜମି ମଧ୍ୟ ତାର ଉର୍ବରତା ହରାଇ ବସିଛି । ଜଳସେଚନ ଆଦିର ବ୍ୟବସ୍ଥା ଅଭାବରୁ କେତେକ ଜମି ଅନାବାଦି ହୋଇ ପଡ଼ୁଛି । ଜମିରେ ଗୋବର ଖତ ପକାଇଲେ ତାହା ବେଶୀ ଉର୍ବର ହୋଇଥାଏ; କିନ୍ତୁ ଲୋକେ ଅଧିକାଂଶ ଗୋବର ଶୁଖାଇ ତାକୁ ଜାଳି ପକାଉ ଅଛନ୍ତି । ଗାଁର ଅଳିଆ-ମଇଳା ପ୍ରଭୃତିକୁ ପୋତି, ପଚାଇ ତାହାକୁ ସାରରୂପେ ଜମିରେ ପକାଇଲେ ବିଶେଷ ଲାଭ ହୋଇଥାଏ । ଗାନ୍ଧୀଜୀ ଏ ବିଷୟରେ ବେଶୀ ଜୋର ଦେଉଥିଲେ । ଏହାଦ୍ୱାରା ଏକେ ତ ଗାଆଁର ପରିଷ୍କାର-ପରିଚ୍ଛନ୍ନତା ବଢ଼ିବ; ଦ୍ୱିତୀୟତଃ ଜମିର ଉତ୍ପାଦନ ମଧ୍ୟ ବହୁଗୁଣରେ ବଢ଼ିଯିବ । କଳଦ୍ୱାରା କୃଷି କରିବା ସକାଶେ ଯେଉଁସବୁ ଲମ୍ବା ଚଉଡ଼ା ଯୋଜନା ଗଢ଼ାଯାଉଛି, ସେ ସବୁକୁ ସେ ସେତେ ପସନ୍ଦ କରୁ ନ ଥିଲେ । କୃଷକମାନେ ଯେପରି ସ୍ୱାବଲମ୍ବୀ ହୋଇ ପାରିବେ, ସେ ବିଷୟ ସେମାନଙ୍କୁ ଶିଖାଇବା ତାଙ୍କର ଲକ୍ଷ୍ୟ ଥିଲା ।

ସେ ଚାହୁଁଥିଲେ, ପ୍ରଥମେ ଜମିରେ ଖାଇବା ସକାଶେ ଶସ୍ୟ ଉତ୍ପାଦନ କରାଯାଉ ଏବଂ ଏହି ଖାଦ୍ୟ-ଶସ୍ୟର ଉତ୍ପାଦନକୁ

ପ୍ରାଧାନ୍ୟ ଦିଆଯାଉ । ସେ ଗ୍ରାମବାସୀମାନଙ୍କୁ ନିଜ ନିଜ ସକାଶେ ଖଜୁରୀ ଓ ତାଳରୁ ଗୁଡ଼ ତିଆରି କରିବାପାଇଁ ମଧ୍ଯ ପରାମର୍ଶ ଦେଉଥିଲେ ।

ସେହିପରି ସେ ଗ୍ରାମର ପଶୁଧନର ଉନ୍ନତି କରିବା ପାଇଁ ମଧ୍ୟ ପରାମର୍ଶ ଦେଉଥିଲେ । ଟ୍ରାକ୍ଟର ସାହାଯ୍ୟରେ ଚାଷ କଲେ ଭାରତ ପରି ଦେଶର ସମସ୍ୟାର ସମାଧାନ କଦାପି ହୋଇ ନ ପାରେ । ଟ୍ରାକ୍ଟର କିଣିବା ନିମନ୍ତେ ଭାରତୀୟ କୃଷକମାନଙ୍କ ପାଖରେ ଏକେ ତ ପଇସା ନାହିଁ; ଦ୍ୱିତୀୟତଃ ସବୁ ଜାଗାରେ ଚାଷ କରିବା ସକାଶେ ଟ୍ରାକ୍ଟର ମିଳିପାରେ ନାହିଁ । ଏଣୁ ଗାନ୍ଧୀଜୀ ପଶୁ-ଧନର ଉନ୍ନତି; ବିଶେଷତଃ ଗୋରୁର ସେବା କରିବା ନିମନ୍ତେ ପରାମର୍ଶ ଦେଉଥିଲେ । ଏହାଦ୍ୱାରା ବଳବାଡ଼ି ପ୍ରଭୃତିରେ କାମ କରିବାପାଇଁ ଉତ୍ତମ ବଳଦ ମିଳି ପାରିବେ, ଦୁଧର ଅଭାବ ହେବ ନାହିଁ ଏବଂ ଜମି ସକାଶେ ଯଥେଷ୍ଟ ଗୋବର ଖତ ମଧ୍ୟ ମିଳିବ । ପୁଣି ଏହି ବଳଦଗୁଡ଼ିକୁ ଚଳାଇବା ନିମନ୍ତେ ପେଟ୍ରୋଲ କିମ୍ବା ସାବଧାନ ଡ୍ରାଇଭରଙ୍କର ଆବଶ୍ୟକତା ସୁଦ୍ଧା ପଡ଼େ ନାହିଁ । ଯେଉଁ ଅଳ୍ପ କେତେ ଜଣ ଧନୀ କୃଷକଙ୍କର ବହୁ ପରିମାଣ ଜମି ଅଛି, ସେହିମାନେହିଁ ଏହାଦ୍ୱାରା ଲାଭବାନ ହୋଇ ପାରନ୍ତି; କିନ୍ତୁ ସମଗ୍ର ଦେଶର ଉନ୍ନତି ଏହାଦ୍ୱାରା ସାଧିତ ହୋଇ ପାରିବ ନାହିଁ ।

ଖଦୀ ଛଡ଼ା ଗ୍ରାମମାନଙ୍କରେ ସହଜରେ ଚଳିବା ଭଳି ଅନ୍ୟାନ୍ୟ ଉଦ୍‌ଯୋଗ ସବୁ ମଧ୍ଯ ଅଛି । ସେ ସବୁ ଉପରେ ମଧ୍ଯ ଗାନ୍ଧୀଜୀ ଜୋର ଦେଇଅଛନ୍ତି । ହାତରେ ପେଷିବା, ହାତରେ କୁଟିବା ଓ ପାଛୁଡ଼ିବା, ଗୁଡ଼ ତିଆରି କରିବା, ସାବୁନ ତିଆରି

କରିବା, କାଗଜ ତିଆରି କରିବା, ଦିଆସିଲି ତିଆରି କରିବା, ଚମଡ଼ା ତିଆରି କରିବା, ତେଲ ପେଡ଼ିବା ଆଦି କାମଗୁଡ଼ିକ ଲୋକମାନେ ସହଜରେ କରି ପାରିବେ । ଏଗୁଡ଼ିକ ସକାଶେ କଞ୍ଚାମାଲର ଅଭାବ ନାହିଁ; କି ସାଧନର ମଧ୍ୟ ଅଭାବ ନାହିଁ । ଏହି କାମଗୁଡ଼ିକ ସକାଶେ ଏତିକି ମାତ୍ର ଆବଶ୍ୟକ ଯେ, ଏ ସବୁଥିରେ ଯେପରି ମେସିନ ବ୍ୟବହାର ନ ହୁଏ । ଶିକ୍ଷିତ ଲୋକମାନେ ଏହାର ଗୁରୁତ୍ୱ ବୁଝି ଗ୍ରାମବାସୀମାନଙ୍କୁ ସତ୍‌ପଥରେ ଚାଳିତ କରନ୍ତୁ । ଯେଉଁ ଗ୍ରାମମାନଙ୍କରେ ଏ ସବୁ କାମ କରାଯାଉଛି, ସେ ସବୁ ଗ୍ରାମର ଲୋକମାନଙ୍କର ଆର୍ଥିକ ଅବସ୍ଥା ସୁଧୁରିଯାଇଛି ଏବଂ ଲୋକମାନେ ଉତ୍ତମ, ପରିଷ୍କାର-ପରିଚ୍ଛନ୍ନ ଓ ଉପଯୋଗୀ ଜିନିଷ ସବୁ ପାଇ ପାରୁଛନ୍ତି ।

ପରାଧୀନ ଭାରତରେ ବିଦେଶୀ ଶାସନ ଓ ବିଦେଶୀ ବାଣିଜ୍ୟ ହେତୁ ଯେତେବେଳେ ଆର୍ଥିକ ବ୍ୟବସ୍ଥା ଧୂଳିସାତ୍ ହୋଇଗଲା, ସେତେବେଳେ ଗାନ୍ଧୀଜୀ କେବଳ ଯେ ଖଦୀ ଓ ତତ୍‌ସଂପୃକ୍ତ ଉଦ୍‌ଯୋଗରେ ନିଜକୁ ସୀମାବଦ୍ଧ କରି ରଖିଲେ, ତାହା ନୁହେଁ; ତାହା ସଙ୍ଗେ ସଙ୍ଗେ ସେ ଆହୁରି ଅନ୍ୟାନ୍ୟ ଗ୍ରାମୋଦ୍ୟୋଗଗୁଡ଼ିକର ସଂଗଠନ କରିବା ନିମନ୍ତେ ଚେଷ୍ଟା କଲେ । ଏହି କାର୍ଯ୍ୟକୁ ଠିକରୂପେ ଚଳାଇବାପାଇଁ ସେ "ଅଖିଳ ଭାରତୀୟ ଗ୍ରାମୋଦ୍ୟୋଗ ସଂଘ" ସ୍ଥାପନା କଲେ । ଗ୍ରାମମାନଙ୍କରେ ବିଭିନ୍ନ ପ୍ରକାର ଉଦ୍‌ଯୋଗର ପ୍ରଚଳନ ଓ ଏହି ଉଦ୍‌ଯୋଗଗୁଡ଼ିକର ଉତ୍ପାଦନର ବିକ୍ରୟ କରାଇବା ଏହି ସଂଘର ପ୍ରଧାନ ଉଦ୍ଦେଶ୍ୟ ।

ଗାନ୍ଧୀଜୀ ଏହି କଥା ଉପରେ ବିଶେଷ ଜୋର ଦେଇ କହୁଥିଲେ ଯେ, କଳ ଚାଉଳ ବା ଅଟା ଖାଇଲେ ମନୁଷ୍ୟର ସ୍ୱାସ୍ଥ୍ୟ

ଖରାପ ହୋଇଯାଏ । ଆଜି ମଧ୍ୟ କଳର ସ୍ଥାପନାଯୋଗୁ ଲକ୍ଷ ଲକ୍ଷ ଗ୍ରାମବାସୀ ଅକର୍ମଣ୍ୟ ଓ ଆଳସ୍ୟପରାୟଣ ହୋଇଯିବେ ଏବଂ ସେମାନଙ୍କ ରୋଜଗାରର ବାଟ ବନ୍ଦ ହୋଇଯିବ । ଏଣୁ ଗ୍ରାମ-ମାନଙ୍କରେ କଳ ବସିବାର କୌଣସି ଆବଶ୍ୟକତା ନାହିଁ । ପ୍ରଥମେ ଗ୍ରାମବାସୀମାନେ ଅନ୍ନ-ବସ୍ତ୍ରର ବ୍ୟବସ୍ଥା କରି ସାରିବା ପରେ ସେମାନଙ୍କର ଅନ୍ୟାନ୍ୟ ପ୍ରୟୋଜନୀୟ ଜିନିଷ ସବୁ ଗ୍ରାମମାନଙ୍କରେ ଉତ୍ପାଦନ କରନ୍ତୁ ଓ ବ୍ୟବହାର କରନ୍ତୁ ।

ଏହାର ଫଳାଫଳ ପରିଣାମରେ ଭଲ ହେଲା । ଲୋକେ ଗ୍ରାମରେ ତିଆରି ହେଉଥିବା ଜିନିଷଗୁଡ଼ିକ ବ୍ୟବହାର କରିବାକୁ ଅଭ୍ୟାସ କଲେ । ଏଣୁ ଉତ୍ପନ୍ନ ଦ୍ରବ୍ୟଗୁଡ଼ିକ କଣ ହେବ ? ଏ ପ୍ରଶ୍ନ ଆଉ ପୂର୍ବପରି ଆରମ୍ଭ କରାଯାଇଥିବା ଉଦ୍‌ଯୋଗଗୁଡ଼ିକ ସମ୍ମୁଖରେ ରହିଲା ନାହିଁ । କେବଳ ମାତ୍ର ଏହି ପ୍ରଶ୍ନ ରହିଲା ଯେ, କିପରି ଅଧିକରୁ ଅଧିକ ଜିନିଷପତ୍ର ତିଆରି କରାଯିବ । କେତେକ ଲୋକ ସହରର ସୁଖ-ସ୍ୱାଚ୍ଛନ୍ଦ୍ୟମୟ ଜୀବନ ପରିତ୍ୟାଗ କରି ଗ୍ରାମ୍ୟ ଜୀବନ-ଯାପନ କଲେ । ସେମାନେ ଗ୍ରାମମାନଙ୍କରେ ରହିବାରୁ ଗ୍ରାମମାନଙ୍କର ସାମାଜିକ ଓ ଆର୍ଥିକ ଜୀବନ ଉପରେ ବଡ଼ ପ୍ରଭାବ ପଡ଼ିଲା ।

ଗାନ୍ଧୀଜୀ ସ୍ଥାୟୀଭାବରେ ଗ୍ରାମମାନଙ୍କର ସଂସ୍କାର କରିବାକୁ ଚାହୁଁଥିଲେ । ସେ ଚାହୁଁଥିଲେ ଯେ ଗ୍ରାମର ଲୋକମାନଙ୍କ ଶିକ୍ଷା ମଧ୍ୟ ଏପରି ହେବା ଉଚିତ, ଯଦ୍ୱାରା କି ସେମାନେ ନିଜର ଜୀବନ ଉପରେ ନିଜର ଦୈନନ୍ଦିନ କାର୍ଯ୍ୟ ଓ ନିଜର କାମ-ଧନ୍ଦାଯୋଗେ ଗର୍ବ କରି ପାରିବେ । ତାଙ୍କ ଯୋଜନାରେ ସ୍ୱାସ୍ଥ୍ୟ, ଶିକ୍ଷା, ଗୃହବାସ ଏବଂ କଳାକୌଶଳ ସବୁକୁ ଏକ ସଙ୍ଗେ ସମ୍ମିଳିତ କରାଯାଇଥିଲା ।

ଏଥିପାଇଁ ସେ ନୂତନ ଶିକ୍ଷାର ଯୋଜନା ଗଠନ କରିଥିଲେ । ସେ ଚାହୁଁଥିଲେ, ହାତକାମ ଶିକ୍ଷାର ମୌଳିକ ଆଧାର ହେଉ ।

ଗାନ୍ଧୀଜୀଙ୍କ ମନରେ ଆଦର୍ଶ ଗ୍ରାମର ଗୋଟିଏ ସ୍ପଷ୍ଟ ରୂପ ଥିଲା ଏବଂ ତାହାକୁ ସେ ଭାରତର ଅଙ୍ଗରୂପେ ଦେଖିବାକୁ ଚାହୁଁଥିଲେ । ସେ କହୁଥିଲେ "ଗ୍ରାମମାନ ଯେତେବେଳେ ଭଲରୂପେ ଉନ୍ନତ ହୋଇ ଉଠିବ, ସେତେବେଳେ ସେହି ସ୍ଥାନମାନଙ୍କରେ ପ୍ରତିଭାଶାଳୀ କଳାକାରମାନଙ୍କର ଅଭାବ ରହିବ ନାହିଁ । ଗ୍ରାମରେ କବି ଓ କଳାକାରମାନଙ୍କର ଆବିର୍ଭାବ ହେବ । ଗ୍ରାମ୍ୟ ଲୋକମାନଙ୍କ ଭିତରୁ ସେମାନଙ୍କ ନିଜର ଭବନ-ନିର୍ମାତା, ଭାଷା-ବିଜ୍ଞାନୀ ଓ ଅନୁସନ୍ଧାନ-କାରୀ ଲୋକ ବାହାରିବେ । ସେ ସମୟରେ ଏହି ଗ୍ରାମଗୁଡ଼ିକରେ ଜୀବନଧାରଣୋପଯୋଗୀ କୌଣସି ବସ୍ତୁର ଅଭାବ ହେବ ନାହିଁ । ଆଜି ଏହି ଗ୍ରାମମାନ ଅଳିଆଗଦାରେ ପରିଣତ ହୋଇଅଛି, କାଲି ସେଗୁଡ଼ିକ ନନ୍ଦନକାନନରେ ପରିଣତ ହୋଇଯିବ । ସେଠାରେ ଉଚ୍ଚଶ୍ରେଣୀର ପ୍ରତିଭାଶାଳୀ ଲୋକ ବାସ କରିବେ । ସେମାନଙ୍କୁ କେହି ଠକି ପାରିବ ନାହିଁ କି ଶୋଷଣ କରି ପାରିବ ନାହିଁ ।"

## ସ୍ୱଦେଶୀ ପ୍ରଚାର

ଆବହମାନ କାଳରୁ ଭାରତୀୟମାନଙ୍କର ସେମାନଙ୍କ ଦେଶ ପ୍ରତି ଅଶେଷ ପ୍ରେମ ରହିଅଛି । ଭାରତ ପୃଥିବୀର ସର୍ବଶ୍ରେଷ୍ଠ ଦେଶ-ମାନଙ୍କ ମଧ୍ୟରେ ଗଣ୍ୟ ବୋଲି ପ୍ରାଚୀନ ଗ୍ରନ୍ଥମାନଙ୍କରେ ଉଲ୍ଲିଖିତ ହୋଇଅଛି ଏବଂ ଭାରତୀୟ ହେବାର ଗୌରବ ସମସ୍ତ ଭାରତୀୟଙ୍କର ଆଲୋଚ୍ୟ ବିଷୟ ହୋଇଅଛି । ଏ ଦେଶର ପ୍ରାଚୀନ ରାଜନୀତି, ସାମାଜିକ ଏବଂ ଆର୍ଥିକ ସଂଗଠନ, ବିଦ୍ୟା ଏବଂ କଳା ସବୁରି ଉପରେ ସ୍ୱଦେଶୀପଣର ଗାଢ଼ ଛାପ ରହିଅଛି । ଅଜ୍ଞାତ ଯୁଗରୁ

ଗ୍ରାମମାନଙ୍କର ସଭ୍ୟତା ଭାରତ ଭୂମି ଉପରେ ପ୍ରତିଷ୍ଠିତ ରହି ବିକାଶପ୍ରାପ୍ତ ହୋଇଅଛି ।

କିନ୍ତୁ ଗାନ୍ଧୀଜୀଙ୍କ ମତରେ ସ୍ୱଦେଶୀ ଆନ୍ଦୋଳନ ପ୍ରତିଶୋଧ ବା ବିଦ୍ୱେଷ ଭାବନାର ପରିଚାୟକ ନୁହେଁ । ଯେଉଁ ଭାବନାରେ ପ୍ରେରିତ ହୋଇ ମନୁଷ୍ୟ ଦୂରବର୍ତ୍ତୀ ଜିନିଷଗୁଡ଼ିକୁ ଛାଡ଼ି ନିଜର ଆଖପାଖରେ ଥିବା ବସ୍ତୁଗୁଡ଼ିକ ଉପରେ ନିର୍ଭର କରେ ଏବଂ ନିଜର ଆଖପାଖରେ ଥିବା ଲୋକମାନଙ୍କର ସେବାରେ ପ୍ରବୃତ୍ତ ହୁଏ, ସେହି ଭାବନା ହେଉଛି ସ୍ୱଦେଶୀ—ଏହା ଗାନ୍ଧୀଜୀଙ୍କ ଆନ୍ତରିକ ମତ । ଭାରତରେ ସେ ଏହିପ୍ରକାର ଭାବନାର ଅଭାବ ଦେଖି ପାରୁ ନ ଥିଲେ । ଭାରତର ଲୋକମାନେ ଦୀର୍ଘକାଳ ପର୍ଯ୍ୟନ୍ତ ପରାଧୀନ ରହି, ନାନାପ୍ରକାର ବାଧାବିଘ୍ନର ସମ୍ମୁଖୀନ ହେଲେ ଏବଂ ତଥାପି ସୁଦ୍ଧା ସେମାନେ ନିଜର ଧର୍ମ, ନିଜର ଭାଷା, ନିଜର ସାମାଜିକ ରୀତିନୀତି ସବୁକୁ ରକ୍ଷା କରି ପାରିଲେ । ଏ କଥା ସ୍ମରଣ କରିବା ଆମ୍ଭମାନଙ୍କର ଉଚିତ । ଏହାର ପରିଣାମ ସ୍ୱରୂପ ବିଦେଶୀ ଶାସକମାନେ ବହୁଚେଷ୍ଟା କରି ଭାରତୀୟମାନଙ୍କର ଆତ୍ମାକୁ ପରାଧୀନ କରି ପାରିଲେ ନାହିଁ । ଆବଶ୍ୟକତାନୁସାରେ ନିଜର ଚାଲିଚଳନ, ରୀତିନୀତି ପ୍ରଭୃତିରେ ପରିବର୍ତ୍ତନ କରି ଜୀବନକୁ ଉଚ୍ଚ ଓ ଉପଯୋଗୀ କରିବା ଅଧିକ କଥା; ସମୟ ସମୟରେ ଭଲରୂପେ ନିଜର ଅନୁସନ୍ଧାନ କରିବା ଓ ମନ୍ଦକୁ ଛାଡ଼ି ଭଲକୁ ଗ୍ରହଣ କରିବା ଜୀବିତ ଜାତିର ଲକ୍ଷଣ ଅଟେ ।

ଗାନ୍ଧୀଜୀଙ୍କ ଜୀବନରେ, ତାଙ୍କର ପ୍ରତି ଲୋମରେ ସ୍ୱଦେଶୀ ଭାବନା ପରିବ୍ୟାପ୍ତ ହୋଇଥିଲା । ସ୍ୱଦେଶୀର ବ୍ୟବହାର ସମସ୍ତଙ୍କ ଆବଶ୍ୟକୀୟ ଧାର୍ମିକ କର୍ତ୍ତବ୍ୟ ବୋଲି ସେ ମନେ କରୁଥିଲେ ।



ଚରଖା ସାଧନାରେ ବ୍ରତନିଷ୍ଠ ବାପୁଜୀ ( ଏ ଚିତ୍ର ଆମେରିକା ଲାଇଫ୍ ପତ୍ରିକା ସହିତ ସମ୍ପୃକ୍ତା ଶ୍ରୀମତୀ ମାର୍ଗାରେଟ୍ ବୋର୍କବାଇଟଙ୍କ ଦ୍ୱାରା ଉଠାଯାଇଥିଲା )



ଜାତିର ମାତୃକଳ୍ପା ପୂଜ୍ୟା କସ୍ତୁରବା



ପୂର୍ବବଙ୍ଗରେ ଶାନ୍ତିମନ୍ତ୍ର ପ୍ରଚାରକ
ପଦଯାତ୍ରୀ ବାପୁଜୀ



ପୂର୍ବବଙ୍ଗ କୃଷୀଙ୍କ ପରି
ତାଳପତ୍ରନିର୍ମିତ ଟୋପି ପିନ୍ଧି ବାପୁଜୀ ସୂତା କାଟୁ ଅଛନ୍ତି
ଦେଶର ଦୀନଦରିଦ୍ରଙ୍କ ପ୍ରତି ତାଙ୍କ ଅପୂର୍ବ ସହାନୁଭୂତିର ଏହା ଏକ ନିଦର୍ଶନ

ଦୈନନ୍ଦିନ ବ୍ୟାବହାରିକ ବିଳାତି ବସ୍ତୁଗୁଡ଼ିକୁ ଛାଡ଼ି ସ୍ୱଦେଶୀ ଜିନିଷ-ଗୁଡ଼ିକୁ ଗ୍ରହଣ କରିବା—ଏତିକି ଗାନ୍ଧୀଜୀଙ୍କ ଉପଦେଶ ନ ଥିଲା । ଭାଷା, ଚାଲିଚଳନ, ସଂସ୍ଥା ସଂଗଠନ, ଶିକ୍ଷା-ଦୀକ୍ଷା—ଏ ସବୁର ସମାବେଶ ତହିଁରେ ହୋଇଥାଏ । ଗାନ୍ଧୀଜୀ ଭଲଭାବରେ ଏ କଥା ଜାଣିଥିଲେ ଯେ, ଯେ ପର୍ଯ୍ୟନ୍ତ ସ୍ୱଦେଶୀ ସଂସ୍କୃତି ରୂପ ଧାରଣ ନ କରିଛି ଏବଂ ଧର୍ମ ସଦୃଶ ଯେ ପର୍ଯ୍ୟନ୍ତ ତାହା ଆମ୍ଭମାନଙ୍କ ଜୀବନରେ ପ୍ରବେଶ ନ କରିଛି, ସେ ପର୍ଯ୍ୟନ୍ତ ବାସ୍ତବିକ ରୂପରେ ସ୍ୱଦେଶୀର ପ୍ରଚାର ହେବ ନାହିଁ କିମ୍ବା ଆମ ରାଷ୍ଟ୍ରୀୟ ଜୀବନ ନିର୍ମାଣରେ ତାହାଠାରୁ କିଛି ସାହାଯ୍ୟ ମିଳିବ ନାହିଁ । ସ୍ୱଦେଶୀ ଆନ୍ଦୋଳନକୁ ସେ ବାଧାବିଘ୍ନ ନିବାରଣ ବା ସଂସ୍କାରର ଉପାୟ ମାତ୍ର ବୋଲି ମଣୁ ନ ଥିଲେ । ତଦ୍ୱାରା ସମଗ୍ର ରାଷ୍ଟ୍ରର ପୁନର୍ନିର୍ମାଣ ଦେଖିବାକୁ ଚାହୁଁଥିଲେ ।

ଭାରତର ଜନତାକୁ ସ୍ୱଦେଶୀର ଯେଉଁ ପ୍ରେରଣା ମିଳିଲା, ତାହାର ସୁପରିଣାମ ସ୍ୱରୂପ ଭାରତରେ ବହୁତ ନୂତନ ନୂତନ ପ୍ରକାରର ଉଦ୍‌ଯୋଗ ଆରମ୍ଭ ହେଲା ଓ ସେଗୁଡ଼ିକର ଅପୂର୍ବ ଉନ୍ନତି ସାଧିତ ହେଲା ।

ଗାନ୍ଧୀଜୀ ଚରଖାକୁ ନିଜ ସ୍ୱଦେଶୀ ଆନ୍ଦୋଳନର ପ୍ରତୀକ ବୋଲି ମନେ କରୁଥିଲେ । ତାହାର ଚକ୍ର ଭାଗଟି ଆଜି ସୁଦ୍ଧା ସ୍ୱାଧୀନ ଭାରତର ପତାକା ଉପରେ ଅଙ୍କିତ ହୋଇଅଛି ଏବଂ ସ୍ୱଦେଶୀର ଗମ୍ଭୀର ଅର୍ଥ ଆଜିକୁ ସମଗ୍ର ସଂସାରର ଧ୍ୟାନ ଆକର୍ଷଣ କରୁଅଛି ।

## ଶ୍ରେଷ୍ଠ ସମାଜ-ସଂସ୍କାରକ

ଭାରତୀୟ ରାଷ୍ଟ୍ରର ନିର୍ମାଣ ପୂର୍ବରୁ ଗାନ୍ଧୀଜୀ ତାହାର ବିଭିନ୍ନ ସାମାଜିକ ଅଙ୍ଗଗୁଡ଼ିକ ଉପରେ ଦୃଷ୍ଟିଦେଲେ । ସେ ଦେଖିଲେ

ଯେ, ସମୂହଭାବରେ ଦେଶର ଉନ୍ନତି କରିବା ସକାଶେ ସେଥିରେ ସମାଜର ବିଭିନ୍ନ ଶ୍ରେଣୀର ଲୋକମାନଙ୍କର ଯୋଗଦାନ ଆବଶ୍ୟକ । କିନ୍ତୁ ପ୍ରଥମେ ତ ଇଚ୍ଛା କରିବାମାତ୍ରେ ଲୋକମାନେ ଯୋଗଦାନ କରନ୍ତି ନାହିଁ । ପୁଣି ଲୋକମାନଙ୍କୁ ବୁଝେଇ ସୁଝେଇ, ସେମାନଙ୍କଠାରେ କର୍ତ୍ତବ୍ୟ-ଜ୍ଞାନ ଜାତ କରାଇ ସେମାନଙ୍କୁ ଏଥି ନିମିତ୍ତ ପ୍ରସ୍ତୁତ କରାଗଲେ ସୁଦ୍ଧା ବିଶେଷ କିଛି ଲାଭ ହୋଇପାରେ ନାହିଁ । କାମ କରିବା ସକାଶେ ଲୋକମାନଙ୍କଠାରେ କ୍ଷମତା ଥିବା ଆବଶ୍ୟକ । କ୍ଷମତା ବିନା ଅସହାୟ ଓ ନିର୍ବଳ ଲୋକ ନିଜର ହିତସାଧନ ତ କରିପାରେ ନାହିଁ; ସେ ସମାଜରେ ହିତ ସକାଶେ କାମ ବା କିପରି କରିପାରିବ ?

ବହୁ ଶତାବ୍ଦୀ ଧରି ଭାରତୀୟ ସମାଜ, ବିଶେଷତଃ ହିନ୍ଦୁ ଜାତି ଅନେକ ପ୍ରଥାର ଓ ଚଳଣିର ବଶୀଭୂତ ହୋଇ ଆସିଅଛି । ଏହି ସବୁ ପ୍ରଥା ଓ ଚଳଣି ତାହାର ଅଙ୍ଗଗୁଡ଼ିକୁ ଦୁର୍ବଳ କରି ପକାଇଛି । ପରିଣାମରେ ସମାଜ ଆପେ ଆପେ ପତନୋନ୍ମୁଖ ଅବସ୍ଥାରେ ପଡ଼ିଅଛି । ଭାରତୀୟ ନାରୀ ଓ ଦଳିତ ଜାତିମାନଙ୍କ ପ୍ରତି ଯେପରି ବ୍ୟବହାର କରାଯାଇଛି, ତାହା ଭାରତୀୟ ସମାଜପକ୍ଷରେ ଯେତିକି କ୍ଷତିକର, ସେତିକି ଲଜ୍ଜାସ୍ପଦ । ପ୍ରାଚୀନ ଭାରତରେ ସ୍ତ୍ରୀମାନଙ୍କର ସ୍ଥାନ ବହୁ ଉଚ୍ଚରେ ଥିଲା । ବୈଦିକ ଓ ପୌରାଣିକ ଯୁଗରେ ପୁରୁଷ ସମାଜରେ ସେମାନଙ୍କର ଆଦର କମ ନ ଥିଲା । ମହାଭାରତ ଓ ରାମାୟଣ ସ୍ତ୍ରୀମାନଙ୍କର ପୁଣ୍ୟଗାଥାମାନଙ୍କରେ ପରିପୂର୍ଣ୍ଣ । ଉନ୍ନତ ପୂର୍ବ-ପୁରୁଷମାନଙ୍କ ସନ୍ତାନ ହୋଇ ସେମାନଙ୍କ ଜୀବନକୁ ଅନୁକରଣ ନ କରିବା ଆମ୍ଭମାନଙ୍କ ପକ୍ଷରେ ଆହୁରି ଲଜ୍ଜାର ବିଷୟ । ଗାନ୍ଧୀଜୀ ସ୍ତ୍ରୀମାନଙ୍କ ଅବସ୍ଥାର ଉନ୍ନତି ଦିଗରେ ବହୁତ ଚେଷ୍ଟା କଲେ ।

ଗାନ୍ଧୀଜୀଙ୍କ ଆଶ୍ରମର ଦ୍ୱାର କେବଳ ପୁରୁଷମାନଙ୍କ ସକାଶେ ଉନ୍ମୁକ୍ତ ନ ଥିଲା । ପୁରୁଷମାନଙ୍କ ପାଇଁ ସେଠାରେ ଯେ ସବୁ ବ୍ୟବସ୍ଥା ଥିଲା, ସ୍ତ୍ରୀମାନଙ୍କ ପାଇଁ ମଧ୍ୟ ସେ ସବୁ ଥିଲା । ସ୍ତ୍ରୀମାନେ ପୁରୁଷମାନଙ୍କ ପରି ସେଠାରେ ରହି କାମ ଶିଖୁଥିଲେ ଓ ସମାଜର ସେବା କରୁଥିଲେ । ଗାନ୍ଧୀଜୀଙ୍କ ସମ୍ପର୍କରେ ଆସି ଅନେକ ଲୌହ ମନୁଷ୍ୟ କାଞ୍ଚନରେ ପରିଣତ ହୋଇଗଲେ । ସ୍ତ୍ରୀମାନେ ସେହିପରି ମଧ୍ୟ ଅସାଧାରଣ ହୋଇଗଲେ । ବହୁ ଦୂରରୁ ଆସି ସ୍ତ୍ରୀମାନେ ପୁରୁଷମାନଙ୍କ ସଦୃଶ ଗାନ୍ଧୀଜୀଙ୍କଠାରୁ ଆଲୋକ ପାଇଲେ ଏବଂ ମାନବର ସେବାରେ ନିଜର ଜୀବନ ଉତ୍ସର୍ଗ କରି ଦେଲେ ।

ଗାନ୍ଧୀଜୀଙ୍କ ଇଚ୍ଛା ଥିଲା, ସ୍ତ୍ରୀମାନଙ୍କୁ ଉପଯୁକ୍ତ ଶିକ୍ଷା ମିଳୁ ଓ ସେମାନେ ସମାଜର ଅଧିକାଧିକ ଉପକାର ସାଧନ କରିବାରେ ଲାଗି ପଡ଼ନ୍ତୁ । କିନ୍ତୁ ନାରୀ ଯେ ପୁରୁଷର ପୂରକ ନ ହୋଇ ତାହାକୁ ଚେପିଯିବା ପାଇଁ ପ୍ରତିଯୋଗିତା କରିବ, ଗାନ୍ଧୀଜୀ ଏ କଥାର ପ୍ରବଳ ବିରୋଧୀ ଥିଲେ । ଏ କଥାରେ ତିଳେମାତ୍ର ସନ୍ଦେହ ନାହିଁ ଯେ, ପୁରୁଷମାନେହିଁ ସମାଜରେ ପ୍ରଚଳିତ ସବୁ ନିୟମର ପ୍ରବର୍ତ୍ତକ ଏବଂ ସ୍ତ୍ରୀମାନଙ୍କ ସମ୍ବନ୍ଧରେ ବିଭିନ୍ନ ପ୍ରକାରର କଥା ସବୁ କହିଥାନ୍ତି । କିନ୍ତୁ ସମାଜରେ ଯଦି ଆଦର୍ଶ ସ୍ତ୍ରୀମାନଙ୍କର ସଂଖ୍ୟା ବଢ଼ିଯାଏ, ତାହାହେଲେ ସେ ନିୟମସବୁ ସେମାନଙ୍କର କିଛି ଅନିଷ୍ଟ କରି ପାରିବ ନାହିଁ । କ୍ରମେ ସେଗୁଡ଼ିକ କାଳର କରାଳ-କବଳରେ ପତିତ ହୋଇ ଲୋପ ପାଇଯିବ ।

ସ୍ତ୍ରୀମାନଙ୍କର ସଂସ୍କାର ସକାଶେ ସେମାନଙ୍କ ମଧ୍ୟରେ ଯେପରି ଜାଗରଣ ଆସିବ, ତାହା ଉପରେ ଗାନ୍ଧୀଜୀ ଖୁବ୍ ଜୋର ଦେଲେ । ସେ ପ୍ରଥମେ ସ୍ଥିରକଲେ ଯେ, ସେଥିନିମିତ୍ତ ଶିକ୍ଷାର

ପ୍ରକୃତ ବିଶେଷ ଆବଶ୍ୟକ । କିନ୍ତୁ କେବଳ ସାହିତ୍ୟ ଓ ବିଜ୍ଞାନ ଶିକ୍ଷା ପାଇ ମନୁଷ୍ୟ ଶିକ୍ଷିତ ହୁଏ ନାହିଁ । ଶିକ୍ଷା ନ ଦେଇ ମଧ୍ୟ ବୁଝାଇ ସୁଝାଇ ସ୍ତ୍ରୀମାନଙ୍କୁ ପ୍ରୟୋଜନୀୟ ବିଷୟମାନ ବତାଇ ଦିଆଯାଇ ପାରିବ ଓ ସେମାନଙ୍କୁ ସେମାନଙ୍କ ଅବସ୍ଥା ସହିତ ପରିଚିତ କରାଯାଇ ପାରିବ । ଥରେ ବାସ୍ତବିକ ଅବସ୍ଥା ସମ୍ବନ୍ଧରେ ସେମାନଙ୍କର ଜ୍ଞାନ ହୋଇଗଲେ, ଆପେ ଆପେ ସେମାନଙ୍କ ସଂସ୍କାର ହେବାକୁ ଲାଗିବ ।

ନାରୀ ଯେ ପୁରୁଷର ସଙ୍ଗିନୀ; ଗାନ୍ଧୀଜୀ ଏ କଥା ସ୍ୱୀକାର କରୁଥିଲେ । ସେ କହୁଥିଲେ ଯେ, ମାନସିକ ଦୃଷ୍ଟିରୁ କୌଣସି ହିସାବରେ ସ୍ତ୍ରୀ ପୁରୁଷର ପଛରେ ପଡ଼ିନାହିଁ । ପୁରୁଷର ପ୍ରତ୍ୟେକ କାମରେ ସହଯୋଗ କରିବାର ଅଧିକାର ତାହାର ଅଛି । ପୂର୍ଣ୍ଣ ସ୍ୱାଧୀନତା ଉପଭୋଗ କରିବାର ଦାବୀ ମଧ୍ୟ ତାର ଅଛି । ସ୍ୱ ସ୍ୱ କ୍ଷେତ୍ରରେ ପୁରୁଷ ଓ ସ୍ତ୍ରୀ ଦୁହିଁଙ୍କର ସମାନ ଓ ପୂର୍ଣ୍ଣ ଅଧିକାର ଅଛି । ଦୁହିଙ୍କର ଉତ୍ତରଦାୟିତ୍ୱ ମଧ୍ୟ ସମାନ । ସମାଜରେ ପ୍ରଚଳିତ ଚଳଣିର ଫଳସ୍ୱରୂପ ଆମ୍ଭେମାନେ ପ୍ରତ୍ୟକ୍ଷ ଦେଖୁଥାଉଁ ଯେ ବଡ଼ ବଡ଼ ମୂର୍ଖ ଓ ନିସ୍ୱାର୍ଥୀ ପୁରୁଷମାନେ ବୁଦ୍ଧିମତୀ ଓ ଯୋଗ୍ୟ ସ୍ତ୍ରୀମାନଙ୍କୁ ଶାସନ କରୁ ଅଛନ୍ତି । ଗାନ୍ଧୀଜୀ ଏହା ବିରୁଦ୍ଧରେ ତୀବ୍ର ପ୍ରତିବାଦ କଲେ । ସ୍ତ୍ରୀମାନଙ୍କର ପରାଧୀନତା ହେତୁ ସମାଜର ପ୍ରଗତିରେ କେତେ ବାଧାବିଘ୍ନ ଆସି ଉପସ୍ଥିତ ହେଉଛି । ଗାନ୍ଧୀଜୀ ସେ ସବୁକୁ ବିଶେଷରୂପେ ଅନୁଭବ କରୁଥିଲେ ଏବଂ କହୁଥିଲେ ଯେ, ଉପଯୁକ୍ତ ଶିକ୍ଷାଦ୍ୱାରା ସ୍ତ୍ରୀମାନଙ୍କୁ ଗାର୍ହସ୍ଥ୍ୟ ଜୀବନ ସକାଶେ ଉପଯୁକ୍ତ କରାଯିବା ଦରକାର । ତାହାହେଲେ ସମାଜରେ ଉତ୍ତମ ପାରିବାରିକ ଜୀବନର ବିକାଶ ଓ ଉନ୍ନତି ହୋଇପାରିବ ।

ସ୍ତ୍ରୀମାନଙ୍କ ସମ୍ବନ୍ଧରେ ନିଜର ବିଚାରଧାରାଗୁଡ଼ିକୁ ଗାନ୍ଧୀଜୀ ବ୍ୟାବହାରିକ ରୂପ ଦେଲେ । ବଡ଼ ବଡ଼ ସଂସ୍କାରକମାନଙ୍କ ଦ୍ୱାରା ଯେଉଁ କାମ ହୋଇପାରି ନ ଥିଲା, ସେହି କାମ ଗାନ୍ଧୀଜୀଙ୍କ ଚେଷ୍ଟାରେ ହୋଇପାରିଲା—ଏ କଥା କେହି ଅସ୍ୱୀକାର କରିପାରିବେ ନାହିଁ । ସେ କହୁଥିଲେ ଯେ ତାଙ୍କର ଅହିଂସା-ଯୁଦ୍ଧ ନିମିତ୍ତ ସ୍ତ୍ରୀମାନେ ପୁରୁଷମାନଙ୍କ ଅପେକ୍ଷା ଅଧିକ ଉପଯୁକ୍ତ । ସ୍ତ୍ରୀମାନଙ୍କ ଉପରେ ଗାନ୍ଧୀଜୀଙ୍କର ଖୁବ୍ ବିଶ୍ୱାସ ଥିଲା । ଏହାର କାରଣମାନ ମଧ୍ୟ ରହିଛି । ଗାନ୍ଧୀଜୀ ସେମାନଙ୍କୁ ଯେଉଁ କାମ କରିବାକୁ ଦେଉଥିଲେ, ସେମାନେ ମନୋଯୋଗପୂର୍ବକ ତାହା ସାଧନ କରୁଥିଲେ । ଆଜି ସୁଦ୍ଧା ଦେଶର ବିଭିନ୍ନାଂଶରେ ତାଙ୍କର ପ୍ରେରଣାରେ ପ୍ରେରିତ ହୋଇ ସ୍ତ୍ରୀମାନେ ସେବାକାର୍ଯ୍ୟ କରୁଅଛନ୍ତି । ସେମାନଙ୍କ ସଂଖ୍ୟା ଅତ୍ୟଳ୍ପ ହେଲେ ସୁଦ୍ଧା ସେମାନଙ୍କ ମହତ୍ତ୍ୱ ଅସୀମ । ସନ ୧୯୩୦ ଓ ସନ ୧୯୪୨ ମସିହାର ଆନ୍ଦୋଳନମାନଙ୍କରେ ଭାରତୀୟ ନାରୀବର୍ଗ ଅତୁଳନୀୟ ଧୈର୍ଯ୍ୟ, ସାହସ, ବୀରତା ଓ କର୍ମ-କୁଶଳତାର ପରିଚୟ ଦେଇଅଛନ୍ତି । ମାତା କସ୍ତୁରବା, ସରୋଜିନୀ ନାଇଡ଼ୁ, ରାଜକୁମାରୀ ଅମୃତକୌର, ରାମେଶ୍ୱରୀ ନେହେରୁ, ସୁଶୀଳା ନାୟାର, ମୀରା ବେନ୍ ପ୍ରଭୃତି ବହୁ ରମଣୀ ଗାନ୍ଧୀଜୀଙ୍କ ପ୍ରେରଣାରେ ନିଜ ନିଜର ଜୀବନ ସମାଜ-ସେବାମୂଳକ କାର୍ଯ୍ୟମାନଙ୍କରେ ଲଗାଇ ଦେଇଅଛନ୍ତି । ଆଜି ମଧ୍ୟ ଲକ୍ଷ ଲକ୍ଷ ନାରୀ ଗାନ୍ଧୀଜୀଙ୍କ ପ୍ରଦର୍ଶିତ ମାର୍ଗରେ ଚାଲି ନିଜ ନିଜକୁ ସମାଜ ସକାଶେ ଉପଯୁକ୍ତ କରିବାରେ ନିୟୋଜିତ ହୋଇଅଛନ୍ତି ।

ବିବାହ-ସମ୍ବନ୍ଧୀୟ ମାମଲାମାନଙ୍କରେ ମଧ୍ୟ ଗାନ୍ଧୀଜୀଙ୍କ ଆଗ୍ରହ ଅପୂର୍ବ ଥିଲା । ବାଲ୍ୟବିବାହ ପ୍ରଭୃତି ପ୍ରଥାଗୁଡ଼ିକ ଦେଶର ଉନ୍ନତି ପଥରେ କଣ୍ଟକ ବୋଲି ସେ ମନେ କରୁଥିଲେ । ବାଲ୍ୟବିବାହ

ପ୍ରଥା ନାରୀର ବିକାଶପଥର ପ୍ରତିବନ୍ଧକ ବିନା ଅନ୍ୟ କ'ଣ ହୋଇପାରେ ? ଗାନ୍ଧୀଜୀଙ୍କ ନିଜର ବାଲ୍ୟବିବାହ ହୋଇଥିଲା । ଏ ସମ୍ବନ୍ଧରେ ପରେ ସେ ନିଜର 'ଆତ୍ମକଥା'ରେ ଯେଉଁ ମନ୍ତବ୍ୟ ପ୍ରକାଶ କରିଅଛନ୍ତି, ତାହା ବଡ଼ ମର୍ମସ୍ପର୍ଶୀ । ସେ ଲେଖିଅଛନ୍ତି—"୧୩ ବର୍ଷ ବୟସରେ ମୋର ବିବାହ ହେଲା । ଏହା ମୋର ହୃଦୟର ସବୁଠାରୁ ବଡ଼ ବ୍ୟଥା । ଆଜ ଯେତେବେଳେ ମୁଁ ୧୨।୧୩ ବର୍ଷର ବାଳକମାନଙ୍କୁ ଦେଖେ ଏବଂ ମୋର ବିବାହ କଥା ମନେ ପଡ଼ିଯାଏ, ସେତେବେଳେ ମୋର ଦୁଃଖର ସୀମା ରହେ ନାହିଁ । ସେତେବେଳେ ଏହି ବାଳକମାନଙ୍କୁ ଅନ୍ତରର ସହିତ ଧନ୍ୟବାଦ ଦେବାକୁ ମୋର ଇଚ୍ଛା ହୁଏ, କାରଣ ସେମାନେ ବର୍ତ୍ତମାନ ପର୍ଯ୍ୟନ୍ତ ମୋର ଦୁର୍ଗତିରୁ ବଞ୍ଚିତ ଅଛନ୍ତି । ୧୩ ବର୍ଷ ବୟସରେ ହୋଇଥିବା ଏହି ବିବାହର ସମର୍ଥନ ସକାଶେ ଗୋଟିଏ ସୁଦ୍ଧା ନୈତିକ ଯୁକ୍ତି ମୋ ମସ୍ତିଷ୍କରେ ପଶୁ ନାହିଁ ।"

ଏ ଦିଗରେ ଗାନ୍ଧୀଜୀ ସଂସ୍କାରର ଗୋଟିଏ ମାତ୍ର ଉପାୟ ସ୍ଥିର କରିଥିଲେ । ତାହା ହେଉଛି ଅଳ୍ପବୟସ୍କା ସ୍ତ୍ରୀ ସହିତ ବିବାହ କରିଥିବା ପୁରୁଷ ଯଦି ଚାହାନ୍ତି, ସେ ସେହି ସ୍ତ୍ରୀମାନଙ୍କର ସଂସ୍କାର କରିପାରନ୍ତି । ସେମାନଙ୍କୁ ପ୍ରୟୋଜନୀୟ ଶିକ୍ଷା ଦେଇ ସେ ପରିବାର ଓ ସମାଜ ଉଭୟ ସକାଶେ ଉପଯୁକ୍ତ କରିପାରନ୍ତି । ବିବାହ ପଦ୍ଧତି ଓ ନିୟମମାନ ସଂଶୋଧନ କରିବା ଦିଗରେ ଗାନ୍ଧୀଜୀ ମଧ୍ୟ ଚେଷ୍ଟିତ ଥିଲେ । ସେ ବହୁ ଅସବର୍ଣ୍ଣ ବିବାହ କରାଇଥିଲେ । ବିବାହ ସମୟରେ ପ୍ରଚଳିତ ନିୟମମାନଙ୍କରେ ଥିବା ଅଯଥା ସାମାଜିକ କଟକଣା ପାଳନ ନ କରି ଅନେକ ଉପଯୋଗୀ କାମ କରିବାକୁ ସେ ଶିକ୍ଷା ଦେଇଥିଲେ । ବିବାହର ପରବର୍ତ୍ତୀ ଜୀବନ ଉପରେ ଏହି ସବୁ

କାମର ଉତ୍ତମ ପ୍ରଭାବ ନିଶ୍ଚିତ ରୂପରେ ପଡ଼ିପାରେ । ତାଙ୍କ ମତରେ ଧର୍ମ ଏକ ବ୍ୟାପକ ବସ୍ତୁ । ଏହାର ବିକାଶ ମନୁଷ୍ୟ ଜାତି ପକ୍ଷରେ ହିତକାଙ୍କ୍ଷୀ ହେବା ଉଚିତ । ଏହିହେତୁ ବିବାହରେ ମାନବ ପ୍ରତି ପ୍ରଯୁଜ୍ୟ ସକଳ ନୈତିକ ଆଦର୍ଶ ଓ ନିୟମମାନ ପାଳିତ ହେବା ଉଚିତ ।

ଅସ୍ପୃଶ୍ୟତା ହିନ୍ଦୁ ଜାତିର ସବୁଠାରୁ ବଡ଼ କଳଙ୍କ । ଏହି କୁପ୍ରଥା ଯୋଗୁ ଗାନ୍ଧୀଜୀ ହୃଦୟର ସହିତ କ୍ଷୋଭ ପ୍ରକାଶ କରୁଥିଲେ । ସେ କହୁଥିଲେ ଯେ, ଭାରତର ଉଜ୍ଜ୍ୱଳ ଦିନମାନଙ୍କରେ ଏହି ଘୃଣ୍ୟ ପ୍ରଥା ପ୍ରଚଳିତ ହୋଇ ନ ଥିବ । କେଜାଣି, ଆମର ନୈତିକ ଅବନତି ଚରମ ସୀମାରେ ପହଞ୍ଚିଥିବା ସମୟର କୌଣସି ଏକ ବାତାବରଣରେ ଏହାକୁ ପ୍ରଶ୍ରୟ ମିଳିଥିବ । ରାଜଯକ୍ଷ୍ମା ପରି ଏହି ରୋଗ ଆମ୍ଭମାନଙ୍କ ମଧ୍ୟରେ ଏପରି ଭାବରେ ବ୍ୟାପିଯାଇଛି ଯେ ଏଥିରୁ ରକ୍ଷାପାଇବା ଆମ୍ଭମାନଙ୍କ ପକ୍ଷରେ ବଡ଼ କଠିନ । ଯେ ପର୍ଯ୍ୟନ୍ତ ଆମ୍ଭେମାନେ ଏହି ଅଭିଶାପରେ ଅଭିଶପ୍ତ ହୋଇ ରହିଥିବୁ, ସେ ପର୍ଯ୍ୟନ୍ତ ଏହି ଦେଶ ଉପରେ ନାନାବିଧ ବିପତ୍ତି ପଡ଼ୁଥିବ । ଏହି ବିପତ୍ତିମାନ କେବଳ ଅସ୍ପୃଶ୍ୟମାନଙ୍କ ପ୍ରତି କରାଯାଉଥିବା ଦୁର୍ବ୍ୟବହାରର ପରିଣାମ ବୋଲି କଥିତ ହେବ ।

ହିନ୍ଦୁଧର୍ମରେ ବହୁକାଳଧରି ଚଳିଆସୁଥିବା ଅଛୁଆଁ ପ୍ରଥା ଭଗବାନ ଓ ତାଙ୍କର ସର୍ବଶ୍ରେଷ୍ଠ ଦାନ ମନୁଷ୍ୟ ଉଭୟଙ୍କ ପ୍ରତି ଘୋର ଅପରାଧ ବୋଲି ଗାନ୍ଧୀଜୀ ମନେ କରୁଥିଲେ । ସେ କହୁଥିଲେ ଯେ, ଏହି ପ୍ରଥା ଗୋଟିଏ ଭୟାନକ ବିଷ ସଦୃଶ ଅଟେ । ଏହା ଧୀରେ ଧୀରେ ହିନ୍ଦୁଧର୍ମକୁ ନିର୍ଜୀବ କରି ଦେଉଅଛି । ଯେଉଁ ଧାର୍ମିକ ନେତାମାନେ ଶାସ୍ତ୍ର ଓ ଧର୍ମର ଶପଥ ଦେଇ ଏହି ଘୃଣ୍ୟ ଅନ୍ୟାୟକୁ

ସମର୍ଥନ କରନ୍ତୁ, ଗାନ୍ଧୀଜୀ ନୈତିକ ଆଧାର ଉପରେ ସେମାନଙ୍କୁ ପ୍ରକୃତ ମାର୍ଗ ଦର୍ଶାଇଲେ। ଛୁଆଁ ଅଛୁଆଁ ଭାବନାକୁ ବ୍ୟକ୍ତିଗତ ଏବଂ ସାମାଜିକ ସ୍ୱଚ୍ଛତା ଓ ପବିତ୍ରତା ସଙ୍ଗେ ମିଶାଇ ଯେଉଁମାନେ ଏକ କରନ୍ତି, ସେମାନଙ୍କର ସରଳ ଜୀବନ ଗାନ୍ଧୀଜୀଙ୍କ ପକ୍ଷରେ ଆଦର୍ଶ ଥିଲା। ଗାନ୍ଧୀଜୀ ନିଜେ ତାଙ୍କ ଜୀବନରେ ଓ ଆଶ୍ରମ-ମାନଙ୍କରେ ଯେଉଁ ଶ୍ରେଷ୍ଠ ପବିତ୍ରତା ପାଳନ କରୁଥିଲେ, ତାହା ଅତୁଳନୀୟ। ବାସ୍ତବିକ ପବିତ୍ରତାର ଭାବନାକୁ ସେ ଅତ୍ୟନ୍ତ ସାବଧାନତାର ସହିତ ରକ୍ଷା କରିଥିଲେ, ଯେପରି କି ଅଛୁଆଁ ପ୍ରଥାକୁ ମାନୁଥିବା କୌଣସି ଲୋକ ସୁଦ୍ଧା କହିପାରିବ ନାହିଁ ଯେ ଅସ୍ପୃଶ୍ୟମାନଙ୍କର ସମ୍ପର୍କରେ ଆସିବାଦ୍ୱାରା ସମାଜ କଳୁଷିତ ହୋଇଯିବ। ଗାନ୍ଧୀଜୀଙ୍କ ଆଶ୍ରମରେ ବାସକରୁଥିବା ଅସ୍ପୃଶ୍ୟ-ମାନଙ୍କର ଜୀବନ କୌଣସି ସ୍ୱଭାବରେ ସୁଦ୍ଧା କୌଣସି ଉଚ୍ଚ କୁଳୀନ ହିନ୍ଦୁଠାରୁ ନୀଚ ନ ଥିଲା। ସବୁ ଧର୍ମରେ ପବିତ୍ରତା ଓ ସ୍ୱଚ୍ଛତା ଇତ୍ୟାଦି ଗୁଣମାନର ମହତ୍ତ୍ୱ ନିହିତ। ଏହି ଗୁଣ ବିନା କୌଣସି ଜାତି ସୁସଂସ୍କୃତ ହୋଇପାରିବ ନାହିଁ ବା ଉନ୍ନତିପଥରେ ଅଗ୍ରସର ହୋଇପାରିବ ନାହିଁ।

ଏହି ଘୃଣ୍ୟ ପ୍ରଥା ହିନ୍ଦୁଜାତିକୁ ଦୁର୍ବଳ କରି ପକାଇଲା ଏବଂ ତାହାଯୋଗୁ ସବର୍ଣ୍ଣ ଓ ଅସ୍ପୃଶ୍ୟ ଉଭୟ ପ୍ରକାର ଲୋକଙ୍କର କ୍ଷତି ଘଟିଲା। ଏହାଦ୍ୱାରା କୋଟି କୋଟି ଅସ୍ପୃଶ୍ୟ ଲୋକଙ୍କର ସ୍ୱାଭାବିକ ବିକାଶର ପଥ ଏବଂ ସେମାନଙ୍କ ଉନ୍ନତିର ମାର୍ଗ ମଧ୍ୟ ଅବରୁଦ୍ଧ ହୋଇଯାଇଥିଲା। ଗାନ୍ଧୀଜୀ ଦେଖିଲେ, ଏହି ପ୍ରଥା ଯେ କେବଳ ଗୋଟିଏ ରାକ୍ଷସୀ ପରି ସ୍ୱରାଜ୍ୟ ପଥରେ ବାଧା ଜନ୍ମାଉଛି କିମ୍ବା କେବଳ ଯେ ରାଜନୈତିକ କୌଶଳ ସକାଶେ କୁଟିଳ ରାଜନୀତିଜ୍ଞ-

ମାନେ ଏଥିଯୋଗୁ ଅନ୍ୟାୟ ଭାବରେ ଲାଭବାନ ହେଉଛନ୍ତି, ତାହା ନୁହେଁ; ରାଷ୍ଟ୍ରକୁ ସବଳ ଓ ସଂଗଠିତ କରିବା ପଥରେ ଏହା ଏକ ପ୍ରଧାନ ପ୍ରତିବନ୍ଧକ । ଏହା ଭବିଷ୍ୟତ ଭାରତର ସ୍ୱର୍ଣ୍ଣମୟ ସ୍ୱପ୍ନକୁ ଧୂଳିରେ ମିଶାଇଦେବ । ଏଣୁ ସେ ଏହି ପ୍ରଥାର ମୂଳୋତ୍ପାଟନ କରିବାରେ ନିଜର ସମସ୍ତ ଶକ୍ତି ପ୍ରୟୋଗ କରିଥିଲେ । ହିନ୍ଦୁ ଲୋକଙ୍କଠାରୁ ଉଚ୍ଚ ନୀଚ ଭାବନା ଦୂର କରିବା ସକାଶେ ସେ ସେମାନଙ୍କୁ ନାନାବିଧ ଉପଦେଶ ଦେଲେ ।

ମହାତ୍ମା ଗାନ୍ଧୀଙ୍କ ଜୀବନରେ ଆପଣା ପର ଦୃଷ୍ଟିରେ ଭେଦଭାବ ନ ଥିଲା । ସମଗ୍ର ସଂସାର ତାଙ୍କ ନିଜର ଥିଲା ଓ ସାରା ଦେଶର ହିତ ନିମନ୍ତେ ସେ ଜୀବନବ୍ୟାପୀ ସଂଘର୍ଷ କରୁଥିଲେ । କିନ୍ତୁ ସଂକୀର୍ଣ୍ଣ ସ୍ୱାର୍ଥପର ଭାବନାରେ ପ୍ରେରିତ ହୋଇ ଭାରତୀୟମାନେ ପରସ୍ପର ଭିତରେ ମନୋମାଳିନ୍ୟ ଘଟାଇବାର ଦେଖିଲେ ତାଙ୍କୁ ବଡ଼ ଦୁଃଖ ଲାଗୁଥିଲା । ସଂସାରରେ ସଂଘର୍ଷର ମୂଳ କାରଣ ହେଉଛି ଗୋଟିଏ ଜାତି ଦ୍ୱାରା ଅନ୍ୟ ଜାତିର ଶୋଷଣ ଏବଂ ଏହି ଅନ୍ୟାୟ ଅନେକ ପ୍ରକାର ସମସ୍ୟାର ରୂପ ଧାରଣ କରି ଅଶାନ୍ତି ଉପୁଜାଏ— ଗାନ୍ଧୀଜୀ ଏହା ଜାଣିଥିଲେ । ଭାରତର ବିଭିନ୍ନ ଶ୍ରେଣୀର ଲୋକମାନେ ପରସ୍ପର ମଧ୍ୟରେ କଳହ ନ କରି ଯେପରି ମିଳିମିଶି ରହିବେ, ସେଥିନିମନ୍ତେ ଗାନ୍ଧୀଜୀ ବାରମ୍ବାର ଚେଷ୍ଟା କରୁଥିଲେ । ଏକ ଦିଗରେ ଗାନ୍ଧୀଜୀ ଦଳିତ ଓ ପୀଡ଼ିତ ଲୋକମାନଙ୍କୁ ସେମାନଙ୍କ ନ୍ୟାୟସଙ୍ଗତ ଅଧିକାର ଦେବା ସକାଶେ ପ୍ରଚାର କରୁଥିଲେ ଓ ସେମାନଙ୍କୁ ଉଚ୍ଚ ସ୍ତରକୁ ଉଠାଇବାର ଚେଷ୍ଟା କରୁଥିଲେ ଏବଂ ଅନ୍ୟ ଦିଗରେ ଅଶାନ୍ତିକୁ ସମୂଳେ ଉତ୍ପାଟନ କରିବା ପାଇଁ ସେ ଲୋକମାନଙ୍କୁ ତ୍ୟାଗର ଉପଦେଶ ଦେଉଥିଲେ । ବ୍ରିଟିଶ ଶାସନକାଳରେ ପ୍ରଦେଶମାନଙ୍କର ଗଠନ,

ବିଭିନ୍ନ ପ୍ରକାର କାରବାର ଓ ଶୃଙ୍ଖଳାମାନଙ୍କ ବିଷୟରେ ନାନା ସ୍ୱେଚ୍ଛାଚାରିତା କରାଯାଇଅଛି । ଦେଶକୁ ଦବାଇ, ନିଜ ମୁଷ୍ଟିରେ ରଖିବାପାଇଁ ମଧ୍ୟ ଏହି ରାଜମଣ୍ଡଳମାନେ ଏପରି ଚେଷ୍ଟା କରି ନୂତନ ସମସ୍ୟାମାନ ଉପୁଜାଇଥିଲେ । ଗାନ୍ଧୀଜୀ ଏହି ରାଜମଣ୍ଡଳକୁ ଭଲ ଭାବରେ ବୁଝିଥିଲେ । ସେ ଚାହୁଁଥିଲେ ଯେ, ଭାଷାର ଆଧାରରେ ପ୍ରଦେଶମାନ ଗଠିତ ହେଉ ଏବଂ ପ୍ରତ୍ୟେକ କ୍ଷେତ୍ରରେ ଦେଶବାସୀମାନଙ୍କୁ ଅବାଧରେ ପ୍ରତିନିଧିତ୍ୱ ମିଳୁ ।

ଗାନ୍ଧୀଜୀଙ୍କ ଦୃଷ୍ଟିରେ ନୂଆ, ପୁରୁଣା ଏବଂ ଆପଣା ପର ପ୍ରଭୃତି ସକାଶେ ପକ୍ଷପାତ ପାଇଁ ସ୍ଥାନ ନ ଥିଲା । ଯାହାର ପକ୍ଷରେ ନ୍ୟାୟ ଅଛି, ଯାହାର ଆଧାର ସତ୍ୟ ଏବଂ ଯାହା ଦ୍ୱାରା ଲୋକହିତ ହୋଇପାରିବ, ଗାନ୍ଧୀଜୀ ତାହାକୁ ହିଁ ସମର୍ଥନ କରୁଥିଲେ । ସଂସାରର ସମସ୍ତ ଲୋକ ଏକଜୁଟ ହୋଇ ତାଙ୍କ ବିରୁଦ୍ଧରେ ଠିଆ ହୋଇଥିଲେ ସୁଦ୍ଧା ସେ ତାଙ୍କ ଦୃଢ଼ସଙ୍କଳ୍ପରୁ ଟଳି ନ ଥାନ୍ତେ । ଅସ୍ପୃଶ୍ୟତାର ଦୂରୀକରଣ ନିମିତ୍ତ ସେ ସମଗ୍ର ଦେଶ ପରିଭ୍ରମଣ କରି ପ୍ରତ୍ୟେକଙ୍କଠାରୁ ଗୋଟିଏ ଗୋଟିଏ ପାହୁଲା ଭିକ୍ଷା କରୁଥିଲେ । ଏଥି ସକାଶେ ଆବଶ୍ୟକ ପଡ଼ିଲେ ଏପରି କି ସେ ନିଜର ଜୀବନ ଦେଇ ଦେବାକୁ ପ୍ରତିଜ୍ଞା କରିଥିଲେ । ସେ ଅସ୍ପୃଶ୍ୟମାନଙ୍କୁ 'ହରିଜନ' ନାମ ଦେଇଥିଲେ । ହରିଜନମାନଙ୍କର ଉପକାର କରିବା ତାଙ୍କ ଜୀବନର ସବୁଠାରୁ ବଡ଼ କାମ ଥିଲା । ଏହାର ପରିଣାମ ସ୍ୱରୂପ, କୌଣସି ସ୍ୱାଧୀନ ଦେଶର ନାଗରିକକୁ ଯେଉଁ ସାମାଜିକ ଅଧିକାର ସବୁ ମିଳିପାରେ, ସେ ସମସ୍ତ ଆଜି ସ୍ୱାଧୀନ ଭାରତରେ ସବୁ ହରିଜନଙ୍କୁ ମିଳିପାରୁଛି । ସତ୍ୟ ଓ ଅହିଂସାର ସାଧନ ଦ୍ୱାରା, ହୃଦୟରେ ଅତୁଟ ବିଶ୍ୱାସ ରଖି ଗାନ୍ଧୀଜୀ ଅସ୍ପୃଶ୍ୟତାକୁ ଦୂର କରିବା ସକାଶେ କାମ ଆରମ୍ଭ କରିଥିଲେ ।

ପ୍ରତ୍ୟକ୍ଷରେ ଆମ୍ଭେମାନେ ଦେଖୁଛୁଁ, ଅଳ୍ପ କେତୋଟା ବର୍ଷରେ ଦେଶର ଚିନ୍ତାଧାରା ବଦଳି ଯାଇଅଛି । ଅସ୍ପୃଶ୍ୟମାନଙ୍କ ପ୍ରତି ସଦ୍‌ବ୍ୟବହାର କରିବାର ଭାବନା ଦେଶରେ ପ୍ରବଳ ହୋଇ ଉଠିଛି । ଗାନ୍ଧୀଜୀଙ୍କ ମହତ୍ ଚେଷ୍ଟା ବିନା ଏତେ ଅଳ୍ପ ସମୟ ମଧ୍ୟରେ ଭାରତର ସବର୍ଣ୍ଣ ହିନ୍ଦୁମାନଙ୍କର ହୃଦୟ ଯେ ଏପରି ବଦଳି ପାରିଥାନ୍ତା—ଏ କଥା କିଏ କହି ପାରିବ ? ଆଫ୍ରିକା ଓ ଆମେରିକାରେ ବ୍ୟାପିଥିବା ବର୍ଣ୍ଣଭେଦ ଘୋର ଅନର୍ଥ ସୃଷ୍ଟି କରୁଛି । ଭାରତରେ ମଧ୍ୟ ତାହାର ପୁନରାବୃତ୍ତି ହୋଇଥା'ନ୍ତା; କିନ୍ତୁ ମହାତ୍ମା ଗାନ୍ଧୀଙ୍କର ଦୂରଦର୍ଶୀ ଅନ୍ତର୍ଦୃଷ୍ଟି ପ୍ରଥମରୁ ଏହି ଭାବୀ ବିପତ୍ତି କଥା ଅନୁମାନ କରିଥିଲି । ସେ ପ୍ରାଣପଣେ ଚେଷ୍ଟାକରି ଏହି ବର୍ଣ୍ଣଭେଦ ଭାବନାକୁ ଦୁର୍ବଳ କରି ପକାଇଲେ; ଯାହାର ଫଳରେ ଭବିଷ୍ୟତ ଭାରତର ନାଗରିକମାନେ ଏ ଦିଗରେ ନିଶ୍ଚିନ୍ତ ହୋଇ କେବଳ ଯେ ପ୍ରେମପୂର୍ବକ ବାସକରିବେ ତାହା ନୁହେଁ, ସମଗ୍ର ସଂସାର ସମ୍ମୁଖରେ ସେମାନେ ଏକ ସାମାଜିକ ଆଦର୍ଶ ମଧ୍ୟ ଉପସ୍ଥାପିତ କରିବେ ।

ସମାଜର ସମସ୍ତ ପୀଡ଼ିତ, ଦଳିତ ଓ ସନ୍ତପ୍ତ ପ୍ରାଣୀଙ୍କ ସକାଶେ ଗାନ୍ଧୀଜୀ ଜଣେ ଦେବଦୂତ ସଦୃଶ ଥିଲେ । ସମସ୍ତଙ୍କ ଭିତରେ ଅବସ୍ଥା ତାଙ୍କୁ ଜଣାଥିଲି ଓ ସମସ୍ତଙ୍କ କଷ୍ଟ ଦୂର କରିବା ସକାଶେ ସେ ଦିନରାତି ଚେଷ୍ଟିତ ଥିଲେ ।

ଭାରତର ସ୍ୱାଧୀନତା ପଥରେ ହିନ୍ଦୁ, ମୁସଲମାନଙ୍କ ଏକତାର ପ୍ରଶ୍ନ ବଡ଼ ଉଗ୍ରରୂପ ଧାରଣ କରି ଆସିଥିଲି । ମହାତ୍ମା ଗାନ୍ଧୀ ଏହାର ଗୁରୁତ୍ୱ ମୂଳରୁ ବୁଝିପାରିଥିଲେ । ଭାରତରେ ବ୍ରିଟିଶ୍ ଶାସକମାନେ ସମସ୍ତ ଶକ୍ତି ପ୍ରୟୋଗ କରି ଭାରତର ସାମ୍ପ୍ରଦାୟିକ

ସମସ୍ୟାକୁ ଜଟିଳ କରି ପକାଇଥିଲେ ଓ ପାରୁପର୍ଯ୍ୟନ୍ତ ଚେଷ୍ଟାକରି ସେମାନେ ଏହି ବିଦ୍ୱେଷାଗ୍ନିକୁ ପ୍ରଜ୍ଜ୍ୱଳିତ କରାଇବାରେ ଲାଗିପଡ଼ି ଥିଲେ । ଗାନ୍ଧୀଜୀ ଓ ଅନ୍ୟାନ୍ୟ ନେତାମାନଙ୍କ ସମ୍ମୁଖରେ ଯଦି ହିନ୍ଦୁ-ମୁସଲମାନ ସମସ୍ୟା ଉପସ୍ଥିତ ହୋଇ ନ ଥା'ନ୍ତା, ତାହାହେଲେ ୧୯୪୭ ମସିହା ଅଗଷ୍ଟ ତା ୧୫ ରିଖର ବହୁ ଦିନ ପୂର୍ବରୁ ଇଂରେଜ-ମାନଙ୍କୁ ଭାରତ ଛାଡ଼ି ଚାଲିଯିବାକୁ ପଡ଼ିଥା'ନ୍ତା ଓ ସେତେବେଳକୁ ଭାରତ ପୃଥିବୀର ଉନ୍ନତତମ ରାଷ୍ଟ୍ରମାନଙ୍କରେ ପରିଗଣିତ ହୋଇଥା'ନ୍ତା । ଗାନ୍ଧୀଜୀ ନିଜ ଆଦର୍ଶ ଓ ସିଦ୍ଧାନ୍ତ ଅନୁସାରେ ପ୍ରେମ ଓ ଭ୍ରାତୃତ୍ୱର ଆଧାର ଉପରେ ଏହି ସମସ୍ୟାର ସମାଧାନ କରିବାକୁ ଚାହୁଁଥିଲେ । ଏ ଦିଗରେ ସେ ଯେଉଁ ଚେଷ୍ଟା କରିଥିଲେ, ଜଗତରେ ତାହାର ଉଦାହରଣ ମିଳିବା କଠିନ । ଗାନ୍ଧୀଜୀ ଦେଶ ବିଭାଗ ପ୍ରସ୍ତାବରେ ଅସମ୍ମତ ଥିଲେ । କିନ୍ତୁ ତାଙ୍କ ସମ୍ମୁଖରେ ଏପରି ଏକ ପରିସ୍ଥିତି ଆସି ଉପୁଜିଲା ଯେ, ଏହାକୁ ସ୍ୱୀକାର କରିବାକୁ ସେ ବାଧ୍ୟ ହେଲେ । କାରଣ ସେ ପକ୍କା ଜନତନ୍ତ୍ରବାଦୀ ଥିଲେ ।

କୌଣସି ସମ୍ପ୍ରଦାୟର ଲୋକଙ୍କୁ ସେମାନଙ୍କ ଇଚ୍ଛାବିରୁଦ୍ଧରେ କୌଣସି କଥା ସ୍ୱୀକାର କରିବାପାଇଁ ବାଧ୍ୟ କରାଇବାକୁ ସେ ପସନ୍ଦ କରୁ ନ ଥିଲେ । ଦେଶବିଭାଗ ପରେ ଯେତେବେଳେ ହିନ୍ଦୁ, ମୁସଲମାନମାନଙ୍କ ମଧ୍ୟରେ ଦଙ୍ଗାହାଙ୍ଗାମା ହେବାକୁ ଲାଗିଲା, ସେତେବେଳେ ସେ ଗଭୀର ଦୁଃଖ ପ୍ରକାଶ କରିଥିଲେ । ନିଜର ସନ୍ତାନ-ମାନଙ୍କୁ ପରସ୍ପର ମଧ୍ୟରେ ଲଢ଼ିବାର ଦେଖିଲେ ପିତାଙ୍କ ମନରେ ଯେତେ କଷ୍ଟ ହୁଏ, ଗାନ୍ଧୀଜୀଙ୍କୁ ତାହାଠାରୁ ଢେର ବେଶୀ କଷ୍ଟ ହେଲା । ଭାରତର ସ୍ୱାଧୀନତା, ସାରା ଜୀବନର ଅକ୍ଳାନ୍ତ ପରିଶ୍ରମର ସଫଳତା ତାଙ୍କ ହୃଦୟକୁ ଶାନ୍ତ କରି ପାରିଲା ନାହିଁ । ଶାନ୍ତି

ସ୍ଥାପନ କରିବାର ଚେଷ୍ଟାରେ ସେ ଗାଆଁ ଗାଆଁ, ସହର ସହର ସବୁଆଡ଼େ ବୁଲିଲେ । ଶରଣାର୍ଥୀମାନଙ୍କୁ ସାହାଯ୍ୟ କରିବାରେ, ପୀଡ଼ିତ ଆତ୍ମାମାନଙ୍କୁ ସ୍ନେହ ଓ ସମବେଦନା ଦ୍ୱାରା ଶାନ୍ତ କରାଇବାରେ ସେ ଦିନରାତି ଚେଷ୍ଟିତ ଥିଲେ । ହିନ୍ଦୁ ମୁସଲମାନର ଭେଦଭାବ ତାଙ୍କୁ କଦାପି ବିଚଳିତ କରିପାରି ନ ଥିଲା । ସାମ୍ପ୍ରଦାୟିକ ବିଦ୍ୱେଷ-ତୋଫାନ ହିମାଳୟ ସଦୃଶ ସେହି ଅବିଚଳ ଓ ଗମ୍ଭୀର ମହାତ୍ମାଙ୍କଠାରେ ବାରମ୍ବାର ଆଘାତ ପାଇ ଛିନ୍ନବିଚ୍ଛିନ୍ନ ହୋଇଗଲା । ବହୁ ପଥଭ୍ରଷ୍ଟ ଲୋକ ଗାନ୍ଧୀଜୀଙ୍କ ସେହି ସ୍ୱରୂପକୁ ବୁଝିପାରି ନାହାନ୍ତି । ତାଙ୍କ ହୃଦୟର ଗଭୀରତା ଓ ଆଦର୍ଶର ଉଚ୍ଚତା ସେମାନେ କଳ୍ପନା ସୁଦ୍ଧା କରିପାରି ନାହାନ୍ତି । ହାୟ ! ସାମ୍ପ୍ରଦାୟିକ ବିଦ୍ୱେଷର ଭୟଙ୍କର ଜ୍ୱାଳାକୁ ନିର୍ବାପିତ କରିବା ଅପରାଧରେ ପରିଶେଷରେ ଏପରି ଜଣେ ଯୁବକହସ୍ତରେ ତାଙ୍କୁ ନିଜ ପ୍ରାଣ ଆହୁତି ଦେବାକୁ ପଡ଼ିଲା । ସଂସାରର ଇତିହାସରେ ଏପରି ଆତ୍ମୋତ୍ସର୍ଗ ଅପୂର୍ବ ଓ ଅତୁଳନୀୟ ।

## ମାଦକ ଦ୍ରବ୍ୟ ନିବାରଣ

ଗାନ୍ଧୀଜୀ ନିଜେ ଏକ ଆଦର୍ଶ ଜୀବନ ଯାପନ କରୁଥିଲେ । ସେ ଗୁଣ୍ଡି, ତମାଖୁ, ଅଫିମ ଓ ଗଞ୍ଜା, ମଦ ପ୍ରଭୃତି ଦ୍ରବ୍ୟ ସେବନ କରିବାର ପ୍ରବଳ ବିରୋଧୀ ଥିଲେ । ତାଙ୍କ ମତରେ ଶରୀର ପକ୍ଷରେ ଏ ସବୁ ଅନାବଶ୍ୟକ; ଏଗୁଡ଼ିକ କେବଳ ମନୁଷ୍ୟର ଅସ୍ୱାଭାବିକ ଶକ୍ତିକୁ ଉତ୍ତେଜିତ କରନ୍ତି । ସ୍ୱାଭାବିକ ଭାବରେ ନିୟମିତ ଜୀବନଯାପନ କରୁଥିବା ଲୋକପକ୍ଷରେ କୌଣସି ପ୍ରକାର ଉତ୍ତେଜକ ଦ୍ରବ୍ୟର ଆଦୌ ଆବଶ୍ୟକତା ନାହିଁ । ଏ କଥାର ଜ୍ୱଳନ୍ତ ପ୍ରମାଣ ସ୍ୱୟଂ ମହାତ୍ମା ଗାନ୍ଧୀ । ତାଙ୍କଠାରେ କାମ

କରିବା ସକାଶେ ଅପାର ଶକ୍ତି ଥିଲା । ନିରନ୍ତର କର୍ମ ସାଧନ କରିବା ଓ କ୍ଳାନ୍ତ ହୋଇଗଲେ ବିଶ୍ରାମ କରି ପୁନର୍ବାର କର୍ମରେ ରତ ରହିବା ତାଙ୍କ ଜୀବନର କ୍ରମ ଥିଲା । ଯେ ତାଙ୍କର ଶେଷ ମୁହୂର୍ତ୍ତ ପର୍ଯ୍ୟନ୍ତ ଯେଉଁ ଉତ୍ସାହ, ସ୍ଫୂର୍ତ୍ତି ଓ ତତ୍ପରତାର ସହିତ କାମ କରିଥିଲେ, ତାହା ସବୁ ଅତୁଳନୀୟ ଏବଂ "ଆଦର୍ଶ ଜୀବନ ସକାଶେ ଯେ କୌଣସି ପ୍ରକାର ଉତ୍ତେଜନାର ଆବଶ୍ୟକତା ନାହିଁ" ଏ କଥାର ସ୍ପଷ୍ଟ ପ୍ରମାଣ ।

ଭାରତୀୟ ସ୍ୱାଧୀନତା ଆନ୍ଦୋଳନ ନିମନ୍ତେ ଗାନ୍ଧୀଜୀ ଯେଉଁ କାର୍ଯ୍ୟକ୍ରମ ସ୍ଥିର କରିଥିଲେ, ତହିଁରେ ସେ 'ମଦ୍ୟପାନ ନିଷେଧ'କୁ ଉଚ୍ଚ ସ୍ଥାନ ଦେଇଥିଲେ । ହିନ୍ଦୁ ମୁସ୍‌ଲିମ ଏକତା ଓ ଅସ୍ପୃଶ୍ୟତା ନିବାରଣ ସଙ୍ଗେ କଂଗ୍ରେସ ୧୯୨୦ ମସିହାରେ ମାଦକ ଦ୍ରବ୍ୟ ନିଷେଧର କାର୍ଯ୍ୟଭାର ନିଜ ହସ୍ତରେ ଗ୍ରହଣ କଲା । ଏହା ଗାନ୍ଧୀଜୀଙ୍କ ପ୍ରେରଣାର ଫଳ ସ୍ୱରୂପ ଥିଲା ।

ରାଜନୀତିକ ଦୃଷ୍ଟିରୁ ଗାନ୍ଧୀଜୀଙ୍କ ରାଜନୀତିକ କାର୍ଯ୍ୟକ୍ରମ ମହତ୍ତ୍ୱପୂର୍ଣ୍ଣ ଥିଲା । ତା ସଙ୍ଗେ ସଙ୍ଗେ ରଚନାତ୍ମକ ଦୃଷ୍ଟିରୁ ମଧ୍ୟ ସମାଜ ପାଇଁ ତାହା ଅଧିକ ମୂଲ୍ୟବାନ୍ ଥିଲା । ଏହା ତାଙ୍କ ରାଜନୀତିକ କାର୍ଯ୍ୟକ୍ରମର ବଡ଼ ବିଶେଷତ୍ୱ । ସନ ୧୯୩୦ ମସିହାର ଆନ୍ଦୋଳନରେ ମଦ ଦୋକାନମାନଙ୍କରେ ଧାରଣା ଦେବା ଏବଂ ତାଡ଼ି ଯୋଗାଉଥିବା ତାଳ ଓ ଖଜୁରୀ ଗଛମାନ କାଟିବା ପ୍ରଭୃତି କାର୍ଯ୍ୟର କ୍ରମ ମଧ୍ୟ ଏହିପ୍ରକାର ଥିଲା । ଆଇନଭଙ୍ଗ କରିବା ଓ ରାଜନୀତିରେ ସାହସର ସହିତ ଅଗ୍ରସର ହେବାର କ୍ଷମତା ରଖିଥିବା ହେତୁ କଂଗ୍ରେସ ପ୍ରତି ଲୋକମାନଙ୍କର ଆସ୍ଥା ବଢ଼ିଲା । ସଙ୍ଗେ ସଙ୍ଗେ ଲକ୍ଷ ଲକ୍ଷ ଲୋକଙ୍କର ହୃଦୟରୁ କଂଗ୍ରେସର ନୀତିଦ୍ୱାରା ପ୍ରଭାବିତ

ହେଲା ଏବଂ ସେମାନେ ଭଲରୂପେ ବୁଝିପାରିଲେ ଯେ ମାଦକ ଦ୍ରବ୍ୟ ସେବନ କଲେ ସମାଜର ଅବନତି ହୁଏ ଏବଂ ଯେତେ ଶୀଘ୍ର ତହିଁରୁ ମୁକ୍ତ ମିଳେ, ସେତେ ଭଲ ।

## ନୂତନ ଶିକ୍ଷାପଦ୍ଧତି ପ୍ରଚାର

ଜାତିର ଉନ୍ନତି ସକାଶେ ଗାନ୍ଧୀଜୀ ସ୍ୱଦେଶୀକୁ ଯେତିକି ମହତ୍ତ୍ୱ ଦେଇ ଅଛନ୍ତି, ତାହାଠାରୁ ରାଷ୍ଟ୍ରୀୟ ଶିକ୍ଷାକୁ କୌଣସି ହିସାବରେ କମ ମହତ୍ତ୍ୱ ଦେଇ ନାହାନ୍ତି । ଗାନ୍ଧୀଜୀ ଭଲରୂପେ ଜାଣିଥିଲେ ଯେ ଆମ୍ଭମାନଙ୍କ ଶିକ୍ଷା ବିଦେଶୀମାନଙ୍କ ହାତରେ ଏବଂ ନିଜର ସ୍ୱାର୍ଥସିଦ୍ଧି ପାଇଁ ସେମାନେ ସେମାନଙ୍କର ପାଠ୍ୟକ୍ରମ ଏପରି ଭାବରେ ପ୍ରସ୍ତୁତ କରି ନେଇ ଅଛନ୍ତି, ଯଦ୍ଦ୍ୱାରା ସରକାରୀ ଶିକ୍ଷାନୁଷ୍ଠାନମାନଙ୍କରେ ପଢ଼ୁଥିବା ତରୁଣ ବିଦ୍ୟାର୍ଥୀମାନଙ୍କ ମସ୍ତିଷ୍କ ଉପରେ ବଡ଼ ଖରାପ ପ୍ରଭାବ ପଡ଼ୁଅଛି । ସେମାନେ ନିଜର ପାଠ୍ୟ-କ୍ରମ ଏପରି ପ୍ରସ୍ତୁତ କରିଅଛନ୍ତି, ଯଦ୍ଦ୍ୱାରା ଛାତ୍ରମାନଙ୍କ ମନରେ ନିଜ ଦେଶର ଇତିହାସ, ସଂସ୍କୃତି ଓ ରାଜନୀତି ସମ୍ବନ୍ଧରେ ଭ୍ରମଧାରଣା ଉପୁଜୁଅଛି ଏବଂ ଦେଶ ବା ସମାଜ ପ୍ରତି ସେମାନଙ୍କର କର୍ତ୍ତବ୍ୟ-ଜ୍ଞାନ ରହୁନାହିଁ । ଗାନ୍ଧୀଜୀ କଂଗ୍ରେସରେ ପଦାର୍ପଣ କରିବା ପୂର୍ବରୁ ମଧ ଦେଶର ବହୁତ ନେତା ଶିକ୍ଷାସମ୍ବନ୍ଧୀୟ ଏହି ବ୍ୟବସ୍ଥାକୁ କ୍ଷତିକାରକ ବୋଲି ମନେ କରିଥିଲେ ଓ ତାହା ବିରୁଦ୍ଧରେ ପ୍ରତିବାଦ ମଧ କରିଥିଲେ; କିନ୍ତୁ ଏହି ପ୍ରତିବାଦ ସମଗ୍ର ଦେଶରେ କେବେହେଲେ ବ୍ୟାପି ପାରି ନ ଥିଲା ।

ସନ ୧୯୨୦ ମସିହାରେ ଗାନ୍ଧୀଜୀ ଅସହଯୋଗ ଆନ୍ଦୋଳନ ଆରମ୍ଭ କଲେ । ସେତେବେଳେ ଯାଇ କଂଗ୍ରେସର କାର୍ଯ୍ୟକ୍ରମରେ ରାଷ୍ଟ୍ରୀୟ ଶିକ୍ଷାକୁ ସ୍ଥାନ ମିଳିଲା । ଗାନ୍ଧୀଜୀ ରାଷ୍ଟ୍ରୀୟ ଶିକ୍ଷାକୁ

କେବଳ ଗୋଟିଏ ଆନ୍ଦୋଳନର ରୂପ ନ ଦେଇ ତାହାକୁ ରଚନାତ୍ମକ କାର୍ଯ୍ୟକ୍ରମର ଅଙ୍ଗବିଶେଷ କରିବାକୁ ଚାହୁଁଥିଲେ । ସେ ଚାହୁଁଥିଲେ, ଜାତୀୟ ଶିକ୍ଷା ଗ୍ରହଣ କରୁଥିବା ଲୋକମାନଙ୍କ ମଧ୍ୟରେ ସ୍ୱାବଲମ୍ବନଭାବ ଜାଗ୍ରତ ହେଉ ଏବଂ ଲୋକମାନେ ବୁଝନ୍ତୁ ଯେ ଚେଷ୍ଟା କଲେ ସେମାନେ ସକଳ ବିଷୟରେ ସ୍ୱାବଲମ୍ବୀ ହୋଇ ପାରିବେ । ଅସହଯୋଗ ଆନ୍ଦୋଳନର ଫଳସ୍ୱରୂପ ଯେଉଁ ବିଦ୍ୟାର୍ଥୀ-ମାନେ ସରକାରୀ ଅନୁଷ୍ଠାନମାନଙ୍କଠାରୁ ସମ୍ବନ୍ଧ ତୁଟାଇ ଦେଲେ, ସେମାନଙ୍କ ସକାଶେ ଶିକ୍ଷାର ବ୍ୟବସ୍ଥା ବିଶେଷ ଆବଶ୍ୟକ ଥିଲା । ଏ ବିଷୟ ପ୍ରତି ଦୃଷ୍ଟି ରଖି ଦେଶର ପ୍ରତ୍ୟେକ ବିଭାଗରେ ଜାତୀୟ ବିଦ୍ୟାଳୟ ସବୁ ଖୋଲା ହେବାକୁ ଲାଗିଲା । କେତେକ ସ୍ଥଳରେ ବିଶ୍ୱବିଦ୍ୟାଳୟ ସବୁ ମଧ୍ୟ ସ୍ଥାପିତ ହେଲା—ଯେଉଁଗୁଡ଼ିକୁ ବିଦ୍ୟାପୀଠ ବୋଲି କୁହାଯାଏ । ଏହି ଅନୁଷ୍ଠାନମାନ ସରକାରୀ ନିୟନ୍ତ୍ରଣରୁ ମୁକ୍ତ ଥିଲା । ଏହା ଏଗୁଡ଼ିକର ସବୁଠାରୁ ବଡ଼ ବିଶେଷତ୍ୱ । ଏଗୁଡ଼ିକରେ ଦେଶୀ ଭାଷାକୁ ଶିକ୍ଷାର ମାଧ୍ୟମ କରାଗଲା ଏବଂ ଇତିହାସ ପଢ଼ାଇବାର ଦୃଷ୍ଟିକୋଣ ବିଲ୍‌କୁଲ ଜାତୀୟ ହୋଇଗଲା । ଜୀବନର ସରଳତା ଓ ଚରିତ୍ର ଉପରେ ବିଶେଷରୂପେ ଜୋର ଦିଆଗଲା ଏବଂ ବିଦ୍ୟାର୍ଥୀମାନେ ସେମାନଙ୍କ ଅଧ୍ୟାପକ-ମାନଙ୍କ ସଙ୍ଗରେ ରାଜନୀତିକ ଆନ୍ଦୋଳନମାନଙ୍କରେ ଭାଗ ନେବାକୁ ଲାଗିଲେ । ବିଦ୍ୟାର୍ଥୀ ଓ ଅଧ୍ୟାପକମାନଙ୍କ ମଧ୍ୟରେ ଉତ୍ତମ ସମ୍ବନ୍ଧ ରହିବାରୁ ଏହି ଅନୁଷ୍ଠାନମାନଙ୍କର କାର୍ଯ୍ୟବିଧାନ ସୁଚାରୁରୂପେ ଚାଲିଲା । କିନ୍ତୁ ଅସହଯୋଗ ଆନ୍ଦୋଳନ ବନ୍ଦ ହୋଇଯିବା ପରେ ଏହି ଅନୁଷ୍ଠାନମାନଙ୍କରେ ବିଦ୍ୟାର୍ଥୀମାନଙ୍କ ସଂଖ୍ୟା କମିଗଲା । ତଥାପି ସୁଦ୍ଧା ଏହି ପ୍ରକାରର ବହୁତ ଅନୁଷ୍ଠାନ ନିଜର ଆଦର୍ଶକୁ ସମ୍ମୁଖରେ ରଖି ଚାଲୁଥାଏ ।



ଓଡ଼ିଶାରେ ବାପୁଜୀଙ୍କ ହରିଜନ ଗସ୍ତବେଳର ଗୋଟିଏ ଦୃଶ୍ୟ
ଛବିରେ ମୁଖ୍ୟମନ୍ତ୍ରୀ ଡକ୍ଟର ମହତାବ [illegible]



କନୁ ଗାନ୍ଧୀଙ୍କ ସହିତ ବାପୁଜୀ



୧୯୪୪ ମସିହାରେ ଜେଲରୁ ମୁକ୍ତ ହେବା ପରେ ସ୍ୱାସ୍ଥ୍ୟ
ଲଭ ପାଇ  ବାପୁଜୀଙ୍କ ପ୍ରଭାତଭ୍ରମଣ



ଶିଶୁବତ୍ସଳ ବାପୁଜୀ

କ୍ରମେ କ୍ରମେ ସରକାରୀ ଅନୁଷ୍ଠାନଗୁଡ଼ିକ ଉପରେ ଏହି ଅନୁଷ୍ଠାନମାନଙ୍କର ପ୍ରଭାବ ଭଲରୂପେ ପଡ଼ିଲା । ଆଂଶିକଭାବରେ ଶିକ୍ଷାର ମାଧ୍ୟମ ବଦଳିଲା । ଜାତୀୟ ସଙ୍ଗୀତକୁ ସ୍ଥାନ ମିଳିବାକୁ ଲାଗିଲା ଏବଂ ରାଜନୀତିରେ ଭାଗନେବା ବିଷୟରେ ବିଦ୍ୟାର୍ଥୀମାନଙ୍କ ଉପରେ ପୂର୍ବପରି ଆଉ କଟକଣା ରହିଲା ନାହିଁ ।

ଗାନ୍ଧୀଜୀ ଜାତୀୟ ଅନୁଷ୍ଠାନଗୁଡ଼ିକୁ ଚଳାଇବାରେ ଖୁବ୍ ଆଗ୍ରହ ପ୍ରକାଶ କରୁଥିଲେ । ସେ ପରେ ମୌଳିକ ଶିକ୍ଷାଯୋଜନା ଗଠନ କରି ଦେଶ ସମ୍ମୁଖରେ ମଧ୍ୟ ଉପସ୍ଥାପନ କଲେ । ଏହି ଯୋଜନାନୁସାରେ ପ୍ରତ୍ୟେକ ବାଳକ ଓ ବାଳିକାକୁ ଶିକ୍ଷିତ କରାଇବା ଏହାର ଉଦ୍ଦେଶ୍ୟ । ଗାନ୍ଧୀଜୀ କହୁଥିଲେ, ନିରକ୍ଷର ହେବା ଅପେକ୍ଷା ସାକ୍ଷର ହେବା ଭଲ; କିନ୍ତୁ ଏହା ସଙ୍ଗେ ସଙ୍ଗେ ପ୍ରତ୍ୟେକ ବିଦ୍ୟାର୍ଥୀକୁ ଅବଶ୍ୟ ଏପରି ସାଧାରଣଜ୍ଞାନ ମିଳିବା ଉଚିତ, ଯଦ୍ଦ୍ୱାରା କି ସେ ନାଗରିକର କର୍ତ୍ତବ୍ୟମାନ ବୁଝିପାରିବ । କାର୍ଯ୍ୟଦ୍ୱାରା ବାଳକକୁ ଶିକ୍ଷିତ କରାଇବାର ଉପାୟ ଏଥିରେ ନିର୍ଦ୍ଦିଷ୍ଟ ହୋଇଅଛି । ଏହା ଗାନ୍ଧୀଜୀଙ୍କ ଯୋଜନାରେ ସବୁଠାରୁ ବଡ଼ ବିଶେଷତ୍ୱ । ଗାନ୍ଧୀଜୀଙ୍କ ଏହି ଯୋଜନା "ଓ୍ୱାର୍ଦ୍ଧା ଯୋଜନା" ( Wardha Scheme ) ନାମରେ କଥିତ ।

ଜାତୀୟ ଶିକ୍ଷାକ୍ଷେତ୍ରରେ ଏହା ଗୋଟିଏ ନୂଆ ସାଧନ । ଏହାକୁ କାର୍ଯ୍ୟରେ ପରିଣତ କରିବାଲାଗି ଗାନ୍ଧୀଜୀ ଶିକ୍ଷାସଂଘ ସ୍ଥାପନ କଲେ ଏବଂ ନୂଆ ଧରଣର ଶିକ୍ଷକ ସବୁ ଗଢ଼ିବାର ବ୍ୟବସ୍ଥା କରାଗଲା । କେବଳ ଯେ ଜାତୀୟ କ୍ଷେତ୍ରରେ ଗାନ୍ଧୀଜୀଙ୍କ ଏହି ଯୋଜନାକୁ ସ୍ୱାଗତ କରାଗଲା ତା ନୁହେଁ; ଭାରତ ସରକାରଙ୍କର ଶିକ୍ଷା ପରାମର୍ଶଦାତା ଶ୍ରୀ ସର୍ଜେଣ୍ଟ ଓ ମାନ୍ଦ୍ରାଜର ଷ୍ଟେଥନ ପ୍ରଭୃତି ମଧ୍ୟ ଏହାକୁ ସ୍ୱାଗତ କଲେ।

କେବଳ ସାକ୍ଷରତା ଶିକ୍ଷାର ଅର୍ଥ ନୁହେଁ । ଅକ୍ଷରଜ୍ଞାନ ଦ୍ଵାରା ଆମକୁ ଗୋଟିଏ ମାଧ୍ୟମ ମିଳିଥାଏ । ଏହି ମାଧ୍ୟମ ଦ୍ଵାରା ଆମ୍ଭେମାନେ ଜ୍ଞାନକଥା ସବୁ ଜାଣିପାରୁଁ । ବ୍ୟାବହାରିକ ଶିକ୍ଷା ପାଇବା ସକାଶେ ପ୍ରତ୍ୟେକ ଜ୍ଞାନବିଜ୍ଞାନ ଓ କଳାକୌଶଳର ଜ୍ଞାନହିଁ ବିଶେଷ ଆବଶ୍ୟକ । ଅଖଣ୍ଡ ଭାରତରେ ଦୁର୍ଭାଗ୍ୟବଶତଃ ଏକାଙ୍ଗୀ ଶିକ୍ଷାର ପ୍ରଚ୍ଛର ହେତୁ ଲୋକମାନେ ମନେ କରୁଥିଲେ ଯେ ସାହିତ୍ୟ, ଗଣିତ ବା ଭୂଗୋଳ ବିଷୟ ଦୁଇ ଚାରିଖଣ୍ଡ ପଢ଼ିପକାଇବା ଓ ବିଶ୍ୱବିଦ୍ୟାଳୟର ଡିଗ୍ରୀଟା ହାସଲ କରିଦେବାହିଁ ବାସ୍ତବିକ ଶିକ୍ଷା ଅଟେ । ଏହି ଭ୍ରାନ୍ତ ଧାରଣାର ପରିଣାମ ସ୍ୱରୂପ ଶିକ୍ଷିତ ଲୋକମାନେ ହସ୍ତକର୍ମଗୁଡ଼ିକୁ ଉପେକ୍ଷା କଲେ ଓ ସେଗୁଡ଼ିକୁ ହୀନଚକ୍ଷୁରେ ଦେଖିବାକୁ ଲାଗିଲେ । ଶିକ୍ଷିତ ଲୋକେ ଉଚ୍ଚପଦ ସବୁ ପାଇବାରୁ ଏହି ହସ୍ତକର୍ମଗୁଡ଼ିକ ପ୍ରତି ଆହୁରି ବେଶୀ ଉଦାସୀନ ହୋଇ ପଡ଼ିଲେ । ଗାନ୍ଧୀଜୀ ଏହା ବିରୁଦ୍ଧରେ ପ୍ରତିବାଦ କଲେ ଓ ହସ୍ତକର୍ମଗୁଡ଼ିକ ପ୍ରତି ଆଦର ପ୍ରକାଶ କରିବାକୁ ଲୋକମାନଙ୍କ ମନରେ ପ୍ରେରଣା ଦେଲେ । ସେ କହିଲେ ଯେ, ପ୍ରତ୍ୟେକ ମନୁଷ୍ୟର କିଛି ନା କିଛି ଶାରୀରିକ ପରିଶ୍ରମ ଅବଶ୍ୟ କରିବା ଉଚିତ । ଗାନ୍ଧୀଜୀ ଏଥିପାଇଁ ନିଜର ମୌଳିକ ଶିକ୍ଷା ଯୋଜନାରେ ହସ୍ତକର୍ମ ଉପରେ ବିଶେଷ ଜୋର ଦେଲେ । ଆମ ଦେଶ ନାନାପ୍ରକାର ଜ୍ଞାନ-ବିଜ୍ଞାନ, କଳାକୌଶଳ ପ୍ରଭୃତିର କେନ୍ଦ୍ର ବୋଲି ପୂର୍ବରୁ ପ୍ରସିଦ୍ଧି ଲାଭ କରିଅଛି, କାରଣ ସେତେବେଳେ ଆମ ଶିକ୍ଷାପ୍ରଣାଳୀରେ ବ୍ୟାବହାରିକତା ଥିଲା । କଳାବିଜ୍ଞାନର ଜୀବନ ସହିତ ସମ୍ବନ୍ଧ ଥିଲା ।

ପ୍ରୌଢ଼ମାନଙ୍କୁ ଶିକ୍ଷିତ କରାଇବା ଦିଗରେ ଗାନ୍ଧୀଜୀ ମଧ୍ୟ ବିଶେଷ ଯତ୍ନବାନ ଥିଲେ । ସେ ମଧ୍ୟ କହୁଥିଲେ ଯେ,

ସେମାନଙ୍କର ଅକ୍ଷର ଜ୍ଞାନ କରାଇବା ସଙ୍ଗେ ସଙ୍ଗେ ମୌଖିକ ଭାବରେ କଥାବାର୍ତ୍ତା ପ୍ରସଙ୍ଗରେ ସେମାନଙ୍କୁ ପ୍ରକୃତ ରାଜନୈତିକ ଶିକ୍ଷା ଦିଆଯାଉ । ପ୍ରୌଢ଼ଶିକ୍ଷାର କାର୍ଯ୍ୟ ବଡ଼ ମହତ୍ତ୍ୱପୂର୍ଣ୍ଣ । ବିଦେଶମାନଙ୍କରେ ନିରକ୍ଷରତା ନିବାରଣ ନିମନ୍ତେ ପ୍ରୌଢ଼ମାନଙ୍କୁ ଶିକ୍ଷିତ କରିବା ପାଇଁ ବହୁତ ଉପାୟ ପ୍ରୟୋଗ କରାଯାଇଛି । ଆମ ଏ ଦେଶର ଶତକଡ଼ା ୯୫ ଜଣ ଅଶିକ୍ଷିତ ଲୋକଙ୍କୁ ଶିକ୍ଷିତ କରିବାର ଆଉ କୌଣସି ଉପାୟ ନାହିଁ ।

ପିଲାମାନଙ୍କୁ ପ୍ରାରମ୍ଭିକ ଶିକ୍ଷା ଦେବା ସମ୍ବନ୍ଧରେ ଗାନ୍ଧୀଜୀ ତାଙ୍କ ନିଶ୍ଚିତ ମତ ବ୍ୟକ୍ତ କରିଥିଲେ ଯେ, ମାତୃଭାଷାର ମାଧ୍ୟମରେ ହିଁ ପିଲାମାନଙ୍କର ଶିକ୍ଷା ଆରମ୍ଭ କରାଯିବା ଉଚିତ । ଏହା ବିନା ପିଲାମାନଙ୍କର ମାନସିକ ବିକାଶ ଠିକରୂପେ ହୋଇ ପାରିବ ନାହିଁ କି ଶିକ୍ଷାକୁ ଲୋକପ୍ରିୟ କରାଯାଇ ପାରିବ ନାହିଁ । ପ୍ରଜାତନ୍ତ୍ରବାଦୀ ବ୍ୟବସ୍ଥାରେ ନାଗରିକମାନେ ବୁଦ୍ଧିମାନ ହେବା ନିତାନ୍ତ ଆବଶ୍ୟକ ଏବଂ ନାଗରିକମାନଙ୍କୁ ଶିକ୍ଷିତ କରାଇବା ନିମନ୍ତେ ସେମାନଙ୍କୁ ସାକ୍ଷର କରାଇବା ବିଶେଷ ଜରୁରୀ । କେବଳ ମାତୃଭାଷା ଦ୍ୱାରା ସର୍ବସାଧାରଣ ଲୋକଙ୍କୁ ଶିକ୍ଷିତ କରାଯାଇପାରିବ; କାରଣ ଅନ୍ୟ ଭାଷାରେ ଶିକ୍ଷା ଦିଆଗଲେ, ଶିକ୍ଷାର ଭିତ୍ତି କଦାପି ଦୃଢ଼ ହୋଇ ନ ପାରେ । ଏହା ବିରୁଦ୍ଧରେ ଯେଉଁ ଉପାୟମାନ ମଧ୍ୟ କରାଯାଇଛି, ସେ ସବୁ ବ୍ୟର୍ଥ ହୋଇଅଛି । ଅଳ୍ପ କେତେ ଜଣ ଲୋକ ଯଦି ବିଶେଷ ଚେଷ୍ଟା କରି ବିଦେଶୀ ଭାଷାରେ ଖୁବ ଉଚ୍ଚଦରର ଶିକ୍ଷା ଲାଭ କରନ୍ତି, ତାହାହେଲେ ଶିକ୍ଷା ସମସ୍ୟାର ସମାଧାନ କଦାପି ହୋଇ ନ ପାରେ; ବରଂ ଏହାର ଫଳାଫଳ ବଡ଼ ମନ୍ଦ ହୁଏ । ସମାଜରେ ତିନି ଶ୍ରେଣୀର ଲୋକ ଥା'ନ୍ତି । ପଢ଼ାପଢ଼ି କରିବାର ସୁବିଧା ପାଇ କେତେକ ଶିକ୍ଷିତ ହୋଇଥାନ୍ତି । ସୁବିଧା

ନ ପାଇ କେତେକ ମଧ୍ୟ ଅଳ୍ପବହୁତେ ଶିକ୍ଷାଲାଭ କରିଥାନ୍ତି ଓ କେତେକ ବିଲ୍‌କୁଲ ନିରକ୍ଷର । ଉପରୋକ୍ତ କାରଣ ହେତୁ ପ୍ରଥମ ଶ୍ରେଣୀ ଲୋକଙ୍କର ସମ୍ପର୍କ ଅନ୍ୟ ଦୁଇଟିଠାରୁ ବିଲ୍‌କୁଲ ତୁଟିଯାଏ । ପରସ୍ପର ମଧ୍ୟରେ ଗୋଟିଏ ଗଭୀର ଓ ପ୍ରଶସ୍ତ ଖାଇ ସୃଷ୍ଟି ହୋଇଯାଏ । ଏହି ଖାଇ ସମାଜକୁ ସଂଗଠିତ ଓ ବଳବାନ କରାଇ ଦିଏ ନାହିଁ । ଭାରତର ସାମାଜିକ ସମସ୍ୟା ଏହାର ଉଦାହରଣ ଅଟେ । ଶିକ୍ଷିତ ଓ ଅଶିକ୍ଷିତମାନଙ୍କ ମଧ୍ୟରେ ଯେଉଁ ପାର୍ଥକ୍ୟ ପରିଲକ୍ଷିତ ହେଉଛି, ତାହା ବର୍ଣ୍ଣ-ବ୍ୟବସ୍ଥା ବା ଆର୍ଥିକ ବୈଷମ୍ୟରୁ ଉପୁଜୁଥିବା ପାର୍ଥକ୍ୟଠାରୁ କୌଣସିମତେ କମ ନୁହେଁ ।

ଗାନ୍ଧୀଜୀ ସବୁପ୍ରକାର ସାମାଜିକ ବୈଷମ୍ୟର କାରଣକୁ ଅନୁସନ୍ଧାନ କରିଥିଲେ ଓ ସେଗୁଡ଼ିକ ଆଡ଼କୁ ଦେଶର ଧ୍ୟାନ ଆକର୍ଷିତ କରିଥିଲେ । ଭାଷା ସମ୍ବନ୍ଧରେ ମଧ୍ୟ ସେ ବହୁତ କିଛି ଅନୁସନ୍ଧାନ କରିଥିଲେ ଓ ପ୍ରତ୍ୟେକ ପ୍ରାଦେଶିକ ଭାଷାକୁ ଉଚିତ ମହତ୍ତ୍ୱ ଦେବା ଦିଗରେ ସେ ସର୍ବଦା ଚେଷ୍ଟିତ ଥିଲେ । ଭାରତର ବିଭିନ୍ନ ପ୍ରାଦେଶିକ ଭାଷାଗୁଡ଼ିକୁ ଶିଖିବାକୁ ସେ ଚେଷ୍ଟା କରୁଥିଲେ ଓ କହୁଥିଲେ ଯେ, ଭାରତର ପ୍ରତ୍ୟେକ ପ୍ରାଦେଶିକ ଭାଷା ଜନତାର ଭାଷା ଅଟେ ଏବଂ ପ୍ରତ୍ୟେକ ପ୍ରାଦେଶିକ ଭାଷାପାଇଁ ବିଶିଷ୍ଟ ସ୍ଥାନ ରହିଅଛି । ଅଖଣ୍ଡରେ ଦେଶ ବିଭାଗ ପରେ ବଙ୍ଗ ପ୍ରଦେଶରେ ହେଉଥିବା ସାଂପ୍ରଦାୟିକ ଗଣ୍ଡଗୋଳ ହେତୁ ତାଙ୍କୁ ବଙ୍ଗ ପ୍ରଦେଶକୁ ଯିବାକୁ ପଡ଼ିଥିଲା । ଏହି ଅବସରରେ ସେ ବଙ୍ଗଳା ଭାଷା ମଧ୍ୟ ଶିକ୍ଷା କରିଥିଲେ । ତାଙ୍କର ଏହି ଚେଷ୍ଟା ଅନୁକରଣୀୟ । ଜନତାର ହୃଦୟର କଥା ଜନତାର ଭାଷାରେହିଁ ଶୁଣିବାକୁ ଗାନ୍ଧୀଜୀ ଚାହୁଁଥିଲେ ।

ଏ ତ ଗଲା ପ୍ରାଦେଶିକ ଭାଷାମାନଙ୍କ ବିଷୟରେ । ସମଗ୍ର ଦେଶ ସକାଶେ ଗୋଟିକୁ ରାଷ୍ଟ୍ରଭାଷାରୂପେ ଗ୍ରହଣ କରିବା ସମ୍ବନ୍ଧରେ ଗାନ୍ଧୀଜୀ ବହୁପୂର୍ବରୁ କାମ ଆରମ୍ଭ କରିଥିଲେ । ସେ ଭଲରୂପେ ଜାଣିଥିଲେ ଯେ, ଏକ ଦିଗରେ ଇଂରେଜୀ ଭାଷା ଦେଶର ରାଷ୍ଟ୍ରଭାଷାର ବିକାଶପଥରେ କଣ୍ଟକ ହୋଇଅଛି ଏବଂ ଅନ୍ୟ ଦିଗରେ ତାହା ପ୍ରାଦେଶିକ ଭାଷାଗୁଡ଼ିକର ମଧ୍ୟ ସର୍ବନାଶ କରିଅଛି । ପ୍ରାଦେଶିକ ଭାଷାଗୁଡ଼ିକୁ ସେମାନଙ୍କ ସ୍ଥାନରୁ ଚ୍ୟୁତ କରାଇବା ବ୍ରିଟିଶ ଶାସନର ଅତ୍ୟନ୍ତ ଦୁଃଖଦାୟକ କାର୍ଯ୍ୟମାନଙ୍କ ମଧ୍ୟରୁ ଗୋଟିଏ । ଗାନ୍ଧୀଜୀ ଯାହା କହିଅଛନ୍ତି, ତାହା ବାସ୍ତବିକ୍ ଠିକ୍ । ସେ କହିଅଛନ୍ତି—"ରାଜା ରାମମୋହନ ରାୟ ଏବଂ ଲୋକମାନ୍ୟ ତିଲକ ଆରମ୍ଭରୁହିଁ ଇଂରେଜୀ ଭାଷାରେ ଭାବିବା ଓ ପ୍ରଧାନତଃ ନିଜର ବିଚାର ପ୍ରକାଶ କରିବାର ଅସୁବିଧା ଉପଲବ୍‌ଧି କରିଥିଲେ । ଯଦି ସେମାନେ ଏପରି ଅସୁବିଧାର ସମ୍ମୁଖୀନ ହୋଇ ନ ଥା'ନ୍ତେ ତାହାହେଲେ ପ୍ରଥମ ଜଣେ ବିଶିଷ୍ଟ ସଂସ୍କାରକ ଓ ଦ୍ୱିତୀୟ ଜଣେ ବିଶିଷ୍ଟ ବିଦ୍ୱାନ ହିସାବରେ ଅଧିକ ଖ୍ୟାତିଲାଭ କରି ପାରିଥାନ୍ତେ । ଅତୀତରେ ଚୈତନ୍ୟ, କବୀର, ଶିବାଜୀ ପ୍ରଭୃତି ବଡ଼ ବଡ଼ ବ୍ୟକ୍ତି ଇଂରେଜୀ ନ ପଢ଼ି ମଧ୍ୟ ଏ ଦେଶରେ ପ୍ରସିଦ୍ଧିଲାଭ କରି ଅଛନ୍ତି ।"

ଦେବନାଗରୀ ଓ ଉର୍ଦ୍ଦୁ ଲିପିରେ ଲିଖିତ ହିନ୍ଦୀ ବା ହିନ୍ଦୁସ୍ଥାନୀ ଭାଷାର ପ୍ରଚଳନ ଭାରତବର୍ଷରେ ସବୁଠାରୁ ବେଶୀ । ଏଣୁ ଗାନ୍ଧୀଜୀ କହୁଥିଲେ ଯେ, ଏହି ଭାଷା ସମଗ୍ର ଦେଶର ରାଷ୍ଟ୍ରଭାଷା ହେବା ଉଚିତ । ଏଥି ନିମିତ୍ତ ସେ ନିଜ ଜୀବନର ପ୍ରାୟ ୩୦ ବର୍ଷ ବୟସରୁ କାର୍ଯ୍ୟ କରିଅଛନ୍ତି । ଦକ୍ଷିଣ-ଭାରତର ଅଧିବାସୀମାନଙ୍କ ପକ୍ଷରେ ରାଷ୍ଟ୍ରଭାଷା ସମସ୍ୟା ସବୁଠାରୁ ବେଶୀ

ମହତ୍ତ୍ୱପୂର୍ଣ୍ଣ । ସେଠାରେ ରାଷ୍ଟ୍ରଭାଷା ହିନ୍ଦୀକୁ ପ୍ରଚାର କରିବା ଦିଗରେ ଗାନ୍ଧୀଜୀ ଅକ୍ଳାନ୍ତ ପରିଶ୍ରମ କରିଥିଲେ । ଏହି ଉଦ୍ଦେଶ୍ୟ ସାଧନ ନିମିତ୍ତ ସେଠାରେ "ଦକ୍ଷିଣ-ଭାରତ ହିନ୍ଦୀ ପ୍ରଚାର ସଙ୍ଘ"ର ସ୍ଥାପନା କରାଯାଇଥିଲା । ଇଂରାଜୀ ପ୍ରଭାବରେ ଦୁଃଖିତ ହୋଇ ଗାନ୍ଧୀଜୀ କହିଥିଲେ, "ବିଦେଶୀ ଶାସନ ହେତୁ ଆମ ଦେଶରେ ବହୁ କୁଫଳ ଫଳିଛି । ଆଜି ଦେଶରେ ଯେଉଁ ବିଦେଶୀ ମାଧ୍ୟମ ପ୍ରଚଳିତ, ତାହା ଇତିହାସରେ ସବୁଠାରୁ ବଡ଼ ଦୁର୍ଘଟଣା । ଏହା ଶାପରୂପରେ ଦେଶର ଯୁବକମାନଙ୍କ ଉପରେ ଲଦି ହୋଇ ପଡ଼ିଛି । ଏହା ରାଷ୍ଟ୍ରକୁ ଶକ୍ତିହୀନ କରି ପକାଇଛି ଓ ବିଦ୍ୟାର୍ଥୀମାନଙ୍କ ପରମାୟୁ କମେଇ ଦେଇଛି । ଏହା ସେମାନଙ୍କୁ ସର୍ବସାଧାରଣଙ୍କଠାରୁ ପୃଥକ କରି ଦେଇଛି ଓ ବୃଥାରେ ଶିକ୍ଷାକୁ ଦୁର୍ମୂଲ୍ୟ କରି ପକାଇଛି । ଯଦି ଭବିଷ୍ୟତରେ ଏହି ନିୟମ ଜାରି ରହେ, ତାହାହେଲେ ଏହା ରାଷ୍ଟ୍ରର ଆତ୍ମାକୁ ନଷ୍ଟ କରିଦେବ । ଏହିହେତୁ ଶିକ୍ଷିତ ଭାରତ ଯେତେ ଶୀଘ୍ର ନିଜେ ନିଜକୁ ବିଦେଶୀ ମାଧ୍ୟମର ଇନ୍ଦ୍ରଜାଲରୁ ମୁକ୍ତ କରିନେବ, ସେ ଓ ଭାରତୀୟମାନେ ସେତେ ଦୂର ଲାଭବାନ ହୋଇ ପାରିବେ ।" ଗାନ୍ଧୀଜୀ ସର୍ବଦା ଏ ବିଷୟ ପ୍ରତି ଦୃଷ୍ଟି ଦେଇ ହିନ୍ଦୀରେ ଯଥାସମ୍ଭବ ଭାଷଣ ଦେଉଥିଲେ ଓ ପତ୍ର ବ୍ୟବହାର କରୁଥିଲେ ।

ରାଷ୍ଟ୍ରଭାଷା ପରି ରାଷ୍ଟ୍ରୀୟ ଲିପି ସମ୍ବନ୍ଧରେ ମଧ୍ୟ ଗାନ୍ଧୀଜୀଙ୍କ ସିଦ୍ଧାନ୍ତ ନିଶ୍ଚିତ ଥିଲା । ସେ ଚାହୁଁଥିଲେ ଯେ ଭାରତର ସବୁ ଭାଷା ସକାଶେ, ବିଶେଷତଃ ଯେଉଁଗୁଡ଼ିକରେ ଅଧିକ ସଂସ୍କୃତ ଶବ୍ଦ ଅଛି, ସେଗୁଡ଼ିକ ସକାଶେ ଦେବନାଗରୀ ଲିପି ବ୍ୟବହୃତ ହେଉ । ସେ କହୁଥିଲେ ଯେ, ବହୁ ଲିପିର ବ୍ୟବହାର ହେଲେ ବିଭିନ୍ନ

ପ୍ରଦେଶର ଲୋକମାନଙ୍କର ପରସ୍ପର ମିଳାମିଶାରେ ବାଧା ଉପୁଜିବ ।

ଗାନ୍ଧୀଜୀ ଜଣେ ଉଚ୍ଚଧରଣର ଲେଖକ ଏବଂ ପତ୍ରକାର ମଧ୍ୟ ଥିଲେ । ସେ ୟଙ୍ଗ୍ ଇଣ୍ଡିଆ, ନବଜୀବନ, ହରିଜନସେବକ ଆଦି ପତ୍ରିକାମାନଙ୍କର ପ୍ରତିଷ୍ଠାତା ଥିଲେ । ସେ ବହୁ ଗ୍ରନ୍ଥ ମଧ୍ୟ ଲେଖିଯାଇ ଅଛନ୍ତି । ସେହି ଗ୍ରନ୍ଥମାନଙ୍କରେ ଓ ତାଙ୍କର ଅନ୍ୟାନ୍ୟ ବହୁ ପ୍ରବନ୍ଧରେ ଦେଶ ଓ ସମାଜରେ ସଂଘର୍ଷ ଘଟାଉଥିବା ବିଭିନ୍ନ ବିଷୟମାନ ସେ ନିର୍ଦ୍ଦେଶ କରି ଅଛନ୍ତି । ଏହି ସମସ୍ତ ପତ୍ରିକା, ଗ୍ରନ୍ଥ ଓ ପ୍ରବନ୍ଧ ଦ୍ୱାରା ଗାନ୍ଧୀଜୀ ଦେଶକୁ ଜାଗ୍ରତ ଓ ସ୍ୱାଧୀନ କରାଇବା ଦିଗରେ ଅଲୌକିକ କାର୍ଯ୍ୟ ସାଧନ କରି ଅଛନ୍ତି ।

ଗାନ୍ଧୀଜୀ କେବଳ ଯେ ଶିକ୍ଷା ଓ ଭାଷା କ୍ଷେତ୍ରରେ ହିଁ ଏହି ପ୍ରକାର କାର୍ଯ୍ୟ କରିଥିଲେ, ତାହା ନୁହେଁ; ଭାରତର ସଂସ୍କୃତିକୁ ଗୋଟିଏ ନୂଆ ରୂପ ଓ ନୂଆ ଜୀବନ ଦେବା ନିମନ୍ତେ ସେ ପାରୁ-ପର୍ଯ୍ୟନ୍ତ ଚେଷ୍ଟା ମଧ୍ୟ କରିଥିଲେ । ଦେଶର ବଡ଼ ବଡ଼ ବିଦ୍ୱାନ୍, ସାହିତ୍ୟିକ, ପତ୍ରକାର ଓ ସମାଜ-ସଂସ୍କାରକ—ସମସ୍ତଙ୍କ ସହିତ ନିକଟ ସମ୍ପର୍କ ରଖି ସବୁକ୍ଷେତ୍ରରେ ଗାନ୍ଧୀଜୀ ପ୍ରଭାବ ପକାଇଥିଲେ ଓ ଦେଶକୁ ଏକ ନବଦୃଷ୍ଟି ପ୍ରଦାନ କରିଥିଲେ । ତାଙ୍କଯୋଗୁ ଦେଶର ସାହିତ୍ୟ ଓ କଳାରେ ନବଜୀବନ ଓ ନବନିର୍ମାଣ ଭାବନାର ସଞ୍ଚାର ହେଲା ।

## ଅହିଂସା

ମହାତ୍ମା ଗାନ୍ଧୀଙ୍କ ସଂଗ୍ରାମର ମୂଳମନ୍ତ୍ର ଅହିଂସା । ଅହିଂସାକୁ ଆୟୁଧ କରି ସେ ୪୦ କୋଟି ଭାରତୀୟଙ୍କୁ ସ୍ୱରାଜ ଦେବା ନିମନ୍ତେ

ପ୍ରବଳ ପ୍ରତାପୀ ବ୍ରିଟିଶ ସରକାରଙ୍କୁ ବାଧ କରିଥିଲେ । ଅହିଂସା ବିଷୟରେ ସେ ନିଜେ ଯାହା କହିଅଛନ୍ତି, ତାହା ନିମ୍ନରେ ଉଦ୍ଧାର କରାଗଲା :—

ମୋତେ ଯଦି କିଏ ପଚାରେ, "ଶତ୍ରୁ ଆଗରୁ ଭୟରେ କାପୁରୁଷ ଭଳି ପଳାଇଯିବା ଉଚିତ, କି ହିଂସା ଆଚରଣ କରି ଶତ୍ରୁକୁ ଜବତ୍ କରିବା ଉଚିତ ?" ମୁଁ ଉତ୍ତର ଦେବି, "ହିଂସା ଆଚରଣ କରି ଶତ୍ରୁକୁ ବରଂ ଜବତ୍ କରିବା ଉଚିତ ।" ୧୯୦୮ ମସିହାରେ ମୋତେ ମାରି ଦେବାକୁ ଜଣେ ବ୍ୟକ୍ତି ମୋ ଉପରେ ଆକ୍ରମଣ କରିଥିଲା । ଏହି କଥାକୁ ଲକ୍ଷ୍ୟ କରି ମୋ ବଡ଼ପୁଅ ମୋତେ ପଚାରିଥିଲା, "ଆପଣଙ୍କ ଉପରେ ଆକ୍ରମଣ ହେବାର ଦେଖି ମୁଁ ପଳାଇଯିବା ଉଚିତ ହୋଇଥାନ୍ତା ନା ବଳପ୍ରୟୋଗ ଦ୍ୱାରା ହିଂସା ଆଚରଣ କରି ଆପଣଙ୍କ ଜୀବନରକ୍ଷା କରିବା ଉଚିତ ହୋଇଥାନ୍ତା ।" ମୁଁ ତାକୁ ଉତ୍ତର ଦେଇଥିଲି, "ହିଂସା ଆଚରଣ କରି ମୋ ଜୀବନ ରକ୍ଷା କରିବା ଉଚିତ ହୋଇଥାନ୍ତା । ମୁଁ ଏହି କାରଣରୁ ବୁଅର୍ ଯୁଦ୍ଧ, ଜୁଲୁ ଯୁଦ୍ଧ ଓ ପ୍ରଥମ ମହାଯୁଦ୍ଧରେ ଯୋଗ ଦେଇଥିଲି । ଯେଉଁମାନଙ୍କର ହିଂସା ବା ଅସ୍ତ୍ର ପ୍ରୟୋଗରେ ବିଶ୍ୱାସ, ସେମାନେ ଅସ୍ତ୍ର ପ୍ରୟୋଗରେ ତାଲିମ ହୁଅନ୍ତୁ—ଏହା ମଧ୍ୟ ମୋର ମତ । ଭାରତ ବରଂ ଅସ୍ତ୍ର ପ୍ରୟୋଗ କରି ନିଜର ମାନ ରକ୍ଷାକରୁ, ତାହା ଭଲ । କିନ୍ତୁ ଶତ୍ରୁ ମାନହାନି କଲାବେଳେ ତହିଁର ବିରୋଧ ନ କରି କାପୁରୁଷ ଓ ଭୀରୁ ଭଳି ରହିବା ମୋ ପକ୍ଷରେ ଏକାବେଳକେ ଅସହ୍ୟ । ଏପରି କ୍ଷେତ୍ରରେ ଅସ୍ତ୍ର ପ୍ରୟୋଗ ବରଂ ଭଲ ବୋଲି ମୁଁ କହିବି ।

କିନ୍ତୁ ମୋର ବିଶ୍ୱାସ, ହିଂସା ଅପେକ୍ଷା ଅହିଂସାର ଶକ୍ତି ଅଧିକ—ଏତେ ଅଧିକ ଯେ, ତାହା କଥାରେ କହିହେବ ନାହିଁ ।

ଦଣ୍ଡ ଦେବାଠାରୁ କ୍ଷମା ଦେବାରେ ଅଧିକ ଗୌରବ । ସିପାହୀ ଯଦି ଶତ୍ରୁକୁ କ୍ଷମା ଦିଏ, ତାହା ସିପାହୀର ଗୌରବ । ଯାହାର ଦଣ୍ଡିବାର ଶକ୍ତି ଥାଏ, ସେ ଯଦି କ୍ଷମା ଦିଏ, ତାହାହେଲେ ତା କ୍ଷମାର ଅର୍ଥ ଅଛି । ଯାହାର ଦଣ୍ଡିବାକୁ ଶକ୍ତି ନ ଥାଏ, ସେ ଯଦି କ୍ଷମା କରୁଛି ବୋଲି ଛଳନା କରେ, ତେବେ ତା କ୍ଷମା ଏକାବେଳକେ ନିରର୍ଥକ । ମୂଷା ବିଲୁଆଡ଼ିକବଳରେ ପଡ଼ି ଖଣ୍ଡ ଖଣ୍ଡ ହୋଇ ବିଲୁଆଡ଼ର ଖାଦ୍ୟ ହେଲାବେଳେ ସେ ଯଦି କହେ—ମୁଁ ବିଲୁଆଡ଼କୁ କ୍ଷମା ଦେଲି, ତାହାହେଲେ ସେ କ୍ଷମାକୁ କ୍ଷମା କୁହାଯାଇ ପାରିବ ନାହିଁ । ତେଣୁ ଜାଲିଓ୍ୱାନାଓ୍ୱାଲାବାଗ ହତ୍ୟାକାଣ୍ଡର କର୍ତ୍ତା ଜେନେରାଲ ଡାୟାର୍ ଓ ତାଙ୍କ ସୈନ୍ୟମାନଙ୍କୁ ଉପଯୁକ୍ତ ଦଣ୍ଡ ଦେବାକୁ ଯେଉଁମାନେ ଦାବୀ କରୁଛନ୍ତି, ମୁଁ ସେମାନଙ୍କ ଦାବୀକୁ ପସନ୍ଦ କରୁଅଛି । ପାରିଲେ ଏ ଲୋକମାନେ ଜେନେରାଲ ଡାୟାର୍‌ଙ୍କୁ ଖଣ୍ଡ ଖଣ୍ଡ କରି କାଟିପକାନ୍ତେ । କିନ୍ତୁ ଅସ୍ତ୍ରଶସ୍ତ୍ର ନାହିଁ ବୋଲି ଭାରତ ଯେ ନିରୁପାୟ, ମୁଁ ଏହା ବିଶ୍ୱାସ କରେ ନାହିଁ । ମୁଁ ନିଜକୁ ମଧ୍ୟ ନିରୁପାୟ ବୋଲି ଭାବେ ନାହିଁ । ମୁଁ ଭାରତର ଶକ୍ତିକୁ ଓ ମୋ ଶକ୍ତିକୁ ଉଚ୍ଚତର ଆଦର୍ଶରେ ଖଟାଇବାକୁ ଚାହେଁ ।

ମୋ କଥାରେ କେହି ଭୁଲ ଅର୍ଥ ନ କରନ୍ତୁ । ଶାରୀରିକ ସାମର୍ଥ୍ୟରୁ ଶକ୍ତି ଜାତ ହୁଏ ନାହିଁ । ଅଦମ୍ୟ ଇଚ୍ଛାରୁ ଶକ୍ତିର ଜନ୍ମ । ଜୁଲୁ-ଜାତିର ଯେ କୌଣସି ଲୋକର ଶାରୀରିକ ସାମର୍ଥ୍ୟ ସାଧାରଣ ଇଂରେଜ ଲୋକର ଶାରୀରିକ ସାମର୍ଥ୍ୟରୁ ଯଥେଷ୍ଟ ଅଧିକ । କିନ୍ତୁ ଇଂରେଜ ବାଳକଟିଏ ଦେଖିଲାମାତ୍ରେ ଜୁଲୁ ପଳାଇଯାଏ; କାରଣ ବାଳକ ବା ତା ଚାକର ହାତରେ ଥିବା ରିଭଲଭର ବନ୍ଧୁକକୁ ତାର ଭୟ । ଜୁଲୁର ହୃଷ୍ଟପୁଷ୍ଟ ଶରୀର ଥିଲେ

କଅଣ ହେବ, ମରଣକୁ ତାର ଖୁବ ଭୟ । ତିରିଶ କୋଟି ଭାରତୀୟଙ୍କୁ ମୋଟେ ଲକ୍ଷେ ଜଣ ଇଂରେଜ ଯେ ଡରେଇ ଥରେଇ ରଖିବା ଅସମ୍ଭବ, ଏ କଥା ବୁଝିପିବାକୁ ଭାରତୀୟମାନଙ୍କୁ ମୁହୂର୍ତ୍ତେ ମାତ୍ର ଲାଗିବ ନାହିଁ । ନିଜର ଶକ୍ତିକୁ ନ ବୁଝିଲା ପର୍ଯ୍ୟନ୍ତ ଭାରତୀୟମାନେ କ୍ଷମା କରିବେ କଅଣ । ଭାରତୀୟମାନେ ଯେତେ-ବେଳେ ନିଜର ଶକ୍ତିକୁ କଳନା କରିନେବେ, ତେତେବେଳେ ମାନସିକ ଶକ୍ତିବଳରେ ସେମାନେ ଦୁର୍ଦ୍ଧର୍ଷ ହୋଇ ଉଠିବେ । ସେମାନଙ୍କ ଦଣ୍ଡିବା ଓ କ୍ଷମିବା ଉଭୟ ଶକ୍ତି ଆସିଯିବ । ସେନାପତି ଡାୟାର୍ ବା ସ୍ମାଙ୍କ୍ ଜନ୍ସନ୍ ତେତେବେଳେ ସେମାନଙ୍କୁ ଅପମାନ ଦେବା ଅସମ୍ଭବ ହୋଇପଡ଼ିବ । ମୋ କଥାର ମର୍ମ ଯଦି ଲୋକେ ଠିକ ଧରିପାରୁ ନ ଥିବେ, ମୁଁ ଅଧୈର୍ଯ୍ୟ ହେବି ନାହିଁ । ବ୍ରିଟିଶ ଜାତି ଆମ୍ଭମାନଙ୍କୁ ଏପରି ମାଡ଼ିମକଚି କାବୁ କରି ରଖିଅଛି ଯେ ଆମ୍ଭେମାନେ ରାଗିବା ବା ପ୍ରତିହିଂସା ନେବା କଥା ଭାବିପାରୁ ନ ଥାଇଁ । ତଥାପି ମୁଁ କହିବି ଯେ ଦୋଷୀକୁ ଦଣ୍ଡ ନ ଦେଇ କ୍ଷମା କଲେ ପରିଣାମରେ ଭାରତ ଲାଭବାନ ହେବ । ଭାରତର ଗୋଟାଏ ମହତ୍ତର କାର୍ଯ୍ୟ କରିବାର ଅଛି । ଜଗତକୁ ଭାରତ ଗୋଟାଏ ମହତ୍ ଶିକ୍ଷା ଦେବ ।

ମୁଁ କେବଳ ଆଦର୍ଶବାଦୀ ନୁହେଁ—ସ୍ୱପ୍ନ-ରାଜ୍ୟରେ ଭାସିବାର ବ୍ୟକ୍ତି ନୁହେଁ । ଆଦର୍ଶବାଦୀ ହେଲେହେଁ ମୁଁ କାର୍ଯ୍ୟକାରୀ ହେବାଭଳି କଳ୍ପନା କରେ । ଅହିଂସା କେବଳ ଯୋଗୀଋଷିଙ୍କର ଧର୍ମ ନୁହେଁ । ସାଧାରଣ ସଂସାରୀ ଲୋକେ ମଧ୍ୟ ଅହିଂସା ଆଚରଣ କରି ପାରିବେ । ପଶୁମାନଙ୍କ ପକ୍ଷରେ ହିଂସା ଯେପରି, ମନୁଷ୍ୟମାନଙ୍କ ପକ୍ଷରେ ଅହିଂସା ସେହିପରି ସ୍ୱାଭାବିକ ଧର୍ମ । ପଶୁଠାରେ ଆତ୍ମା ନିଷ୍କ୍ରିୟ

ହୋଇ ଥାଏ; ଶାରୀରିକ ଶକ୍ତିଠାରୁ ବଳି ଅନ୍ୟ କିଛି ଗୋଟାଏ ଶକ୍ତି ଅଛି ବୋଲି ପଶୁ ଜାଣେ ନାହିଁ। କିନ୍ତୁ ମନୁଷ୍ୟ ଶାରୀରିକ ଶକ୍ତିଠାରୁ ମହତ୍ତର ଆତ୍ମିକ ଶକ୍ତି ଦ୍ୱାରା ପରିଚାଳିତ; ସେହି ଆତ୍ମିକ ଶକ୍ତି ଯେଉଁଠି ମନୁଷ୍ୟର ଗୌରବ।

ତେଣୁ ଭାରତ ଆଗରେ ମୁଁ ପୁରାଣ ଯୁଗର ଆତ୍ମତ୍ୟାଗର ପନ୍ଥା ଉପସ୍ଥାପିତ କରୁଛି। ସତ୍ୟାଗ୍ରହରୁ ଅସହଯୋଗ ଓ ନିଷ୍କ୍ରିୟ ପ୍ରତିରୋଧ ବାହାରିଛି। ପୁରାଣ ଯୁଗରେ ଯୋଗୀ ଋଷିମାନେ ନିଜ ଶରୀରକୁ ଦୁଃଖକଷ୍ଟ ଦେଇ ସତ୍ୟାଗ୍ରହ, ଅସହଯୋଗ ଓ ନିଷ୍କ୍ରିୟ ପ୍ରତିରୋଧ ଦ୍ୱାରା ଲକ୍ଷ୍ୟ ସିଦ୍ଧି କରୁଥିଲେ। ସେହି ପୁରୁଣା ପନ୍ଥାକୁ ମୁଁ ନୂଆ କରି ଭାରତ ଆଗରେ ବାଢ଼ୁଅଛି। ଚତୁର୍ଦ୍ଦିଗରେ ହିଂସାର ରାଜତ୍ୱ ବ୍ୟାପିଥିଲେ ମଧ୍ୟ ଯୋଗୀଋଷିମାନେ ତନ୍ମଧ୍ୟରେ ଅହିଂସାର ସନ୍ଧାନ ପାଇଥିଲେ। ତେଣୁ ନିଉଟନ୍‌ଙ୍କଠାରୁ ସେମାନେ ଆହୁରି ବଡ଼ ଆବିଷ୍କାରକ ଓ ୱେଲିଙ୍ଗଟନ୍‌ଙ୍କଠାରୁ ଆହୁରି ବଡ଼ ଯୋଦ୍ଧା। ଅସ୍ତ୍ରଶସ୍ତ୍ରର ମହିମା ସେମାନଙ୍କୁ ଯେ ଅଜଣା ଥିଲା, ତାହା ନୁହେଁ; କିନ୍ତୁ ତାକୁ ସେମାନେ ନିରର୍ଥକ ବୋଲି ଜ୍ଞାନ କରିଥିଲେ। ତେଣୁ ହିଂସା-ପ୍ରପୀଡ଼ିତ ସଂସାରକୁ ସେମାନେ ଶିକ୍ଷା ଦେଇଥିଲେ ଯେ 'ଅହିଂସାରେ ତାର ରକ୍ଷା—ହିଂସାରେ ତାର ବିନାଶ'।

ଅହିଂସାକୁ କାର୍ଯ୍ୟକାରୀ କଲାବେଳେ ଅହିଂସ ବ୍ୟକ୍ତି ଉପଲବ୍ଧି କରେ ଯେ ସେ ନିଜ ଶରୀର ଉପରକୁ ଜାଣିଶୁଣି ଦୁଃଖ-କଷ୍ଟ ବରଣ କରୁଅଛି। ଅନିଷ୍ଟକାରୀର ଅନିଷ୍ଟକୁ ଡରି ମରି ସହ୍ୟ କରିବାର ଅର୍ଥ ଅହିଂସା ନୁହେଁ; ବରଂ ତା ଅନିଷ୍ଟର ପ୍ରତିରୋଧ ନିମନ୍ତେ ନିଜର ଆତ୍ମିକ ଶକ୍ତିକୁ ପୂରାପୂରି ପ୍ରୟୋଗ କରିବାହିଁ ଅହିଂସା। ଏହି ଆତ୍ମିକ ଶକ୍ତିରେ ବଳୀୟାନ ହୋଇପାରିଲେ

ଜଣେ ମାତ୍ର ବ୍ୟକ୍ତି ମଧ୍ୟ ତାର ମାନ, ଧର୍ମ ଓ ବ୍ୟକ୍ତିତ୍ୱକୁ ରକ୍ଷା କରିବା ନିମନ୍ତେ ଗୋଟାଏ ବିରାଟ ସାମ୍ରାଜ୍ୟର ପୁଞ୍ଜିଭୂତ ଶକ୍ତିକୁ ତୁଚ୍ଛ ଜ୍ଞାନ କରି ତାହାର ପ୍ରକାଶ୍ୟ ବିରୋଧ କରିପାରେ । ଉକ୍ତ ସାମ୍ରାଜ୍ୟର ଧ୍ୱଂସ ପାଇଁ ପଥ ପରିଷ୍କାର କରିପାରେ ବା ତାହାର ଯାବତୀୟ ଆବିଳତା ଦୂର କରି ତାକୁ ସତ୍‌ପଥରେ ପରିଚାଳିତ କରିପାରେ ।

ଭାରତକୁ ଅହିଂସା ଆଚରଣ କରିବାକୁ ମୁଁ ଯେ ଉପଦେଶ ଦେଉଛି, ତାହାର କାରଣ ନୁହେ ଯେ ଭାରତ ଦୁର୍ବଳ । ଭାରତ ତାର ଶକ୍ତି ଓ ସାମର୍ଥ୍ୟ ଉପଲବ୍‌ଧି କରୁ ଏବଂ ତା ପରେ ଅହିଂସା ଆଚରଣ କରୁ । ନିଜର ଶକ୍ତି ସାମର୍ଥ୍ୟ ଉପଲବ୍‌ଧି କରିବା ନିମନ୍ତେ ଅସ୍ତ୍ରଶସ୍ତ୍ର ପ୍ରୟୋଗରେ ତାଲିମ ହେବାର ପ୍ରୟୋଜନ ନାହିଁ । ନିଜ ନିଜକୁ ରକ୍ତମାଂସର ଜଡ଼ ଶରୀର ବୋଲି ଜ୍ଞାନ କରୁଥିବାରୁ ଆମ୍ଭେମାନେ ଅସ୍ତ୍ରଶସ୍ତ୍ର ପ୍ରୟୋଗରେ ତାଲିମ ହେବାକୁ ଇଚ୍ଛା କରୁ । ମୁଁ ଭାରତୀୟମାନଙ୍କୁ ହୃଦୟଙ୍ଗମ କରିବାକୁ ଚାହେଁ ଯେ, ସେମାନଙ୍କର ଶରୀର ଛଡ଼ା ଆତ୍ମା ଅଛି ଏବଂ ସେ ଆତ୍ମାର ବିନାଶ ନାହିଁ । ଶାରୀରିକ ଯାବତୀୟ ଦୁର୍ବଳତାକୁ ତାହା ଅତିକ୍ରମ କରିପାରେ ଏବଂ ସମଗ୍ର ଜଗତର ଜଡ଼ ଶକ୍ତି ତା ବିରୁଦ୍ଧରେ ଏକତ୍ର ହେଲେ ମଧ୍ୟ ତା ପରେ ସେ ପଦାଘାତ କରିପାରେ । "ରାମ" ତ ମନୁଷ୍ୟ ମାତ୍ର ଥିଲେ—ସେ ବାନରସେନା ଗୁଡ଼ିଏ ଘେନି ଦୁର୍ଦ୍ଧର୍ଷ ଦଶଶିର ରାବଣ ରାକ୍ଷସର ସମୁଦ୍ର ଅଭ୍ୟନ୍ତରରେ ସୁରକ୍ଷିତ ଲଙ୍କାଗଡ଼କୁ ଜୟ କଲେ କିପରି ? ତାଙ୍କ ବିଜୟର ଅର୍ଥ ଆଧ୍ୟାତ୍ମିକ ଶକ୍ତିଦ୍ୱାରା ଜଡ଼ ଶକ୍ତିର ବିଜୟ ନୁହେ କି ? ମୋ ବ୍ୟାବହାରିକ ଜ୍ଞାନରୁ ଜାଣିପାରୁଛି ଯେ ରାଜନୈତିକ କ୍ଷେତ୍ରରେ ଭାରତକୁ ବିଜୟ ହାସଲ କରିବାକୁ

ହେବ ଏବଂ ପୂର୍ଣ୍ଣ ଆଧ୍ୟାତ୍ମିକ ଶକ୍ତିର ସମସ୍ତ ଭାରତୀୟ ଜନତା ଉଦ୍‌ବୁଦ୍ଧ ହେଲା ପର୍ଯ୍ୟନ୍ତ ଭାରତକୁ ଅପେକ୍ଷା କରି ବସିରହିବାକୁ ହେବ ନାହିଁ । ଇଂରେଜମାନଙ୍କ ତୋପ, ଟ୍ୟାଙ୍କ୍ ଓ ଉଡ଼ାଜାହାଜ ଦେଖି ଭାରତୀୟମାନେ ଭୟରେ କାବୁ ହୋଇ ପଡ଼ୁଅଛନ୍ତି ଏବଂ ଅସ୍ତ୍ରବଳରେ ସେ ସବୁର ବିରୋଧ କରିବାକୁ ନିଜକୁ ଅକ୍ଷମ ଜ୍ଞାନ କରି ଦୁର୍ବଳତାଯୋଗୁ ସେମାନେ ଅହିଂସା, ଅସହଯୋଗ ପନ୍ଥାରେ ବ୍ରିଟିଶ ସରକାର ସହିତ ଲଢ଼ିବାକୁ ବାହାରି ଅଛନ୍ତି । କିନ୍ତୁ ମୋର ଦୃଢ଼ ବିଶ୍ୱାସ ଯେ, ଏହା ସତ୍ତ୍ୱେ ମଧ୍ୟ ସେମାନେ ଅଭିଳଷିତ ଫଳ ଲାଭ କରିବେ; ଅର୍ଥାତ୍ ବ୍ରିଟିଶଙ୍କ ଦାସତ୍ୱରୁ ମୁକ୍ତିଲାଭ କରିବେ । କେବଳ ଏତିକି ଦରକାର ଯେ ଯଥେଷ୍ଟ ସଂଖ୍ୟକ ଭାରତୀୟ ଏହି ଅହିଂସ ଅସହଯୋଗ ପନ୍ଥାରେ ପଥିକ ହୋଇ ବାହାରିବେ ।

ସିନ୍‌ଫିନ୍ ଆନ୍ଦୋଳନଠାରୁ ଏ ଅହିଂସ ଅସହଯୋଗ ଆନ୍ଦୋଳନ ପୂରାପୂରି ଭିନ୍ନ । ଏଥିରେ ହିଂସାର ଆଦୌ ସ୍ଥାନ ନାହିଁ । ଯେଉଁ ଭାରତୀୟ ଜାତୀୟତାବାଦୀମାନେ ହିଂସାବଲମ୍ବନ କରି ସଶସ୍ତ୍ର ଯୁଦ୍ଧଦ୍ୱାରା ଭାରତକୁ ସ୍ୱାଧୀନ କରିବାକୁ ଇଚ୍ଛୁକ; ଏ ଅହିଂସ ଅସହଯୋଗ ଆନ୍ଦୋଳନରେ ଯୋଗ ଦେଇ ଏହାର କାର୍ଯ୍ୟକାରିତାର ପରଖ ନେବାକୁ ମୁଁ ସେମାନଙ୍କୁ ଆହ୍ୱାନ କରୁଅଛି । ଅନ୍ତର୍ନିହିତ ଦୁର୍ବଳତା ଯୋଗୁଁ ଏହା କଦାଚ ବିଫଳ ହେବ ନାହିଁ । ଏହାକୁ ଗ୍ରହଣ କରିବାକୁ ଯଥେଷ୍ଟ ସଂଖ୍ୟକ ଲୋକ ଯଦି ଆଗଭର ନ ହୁଅନ୍ତି; କେବଳ ତାହାହେଲେ ଏହା ବିଫଳ ହୋଇପାରେ । ଅସହଯୋଗ ଆନ୍ଦୋଳନ ବିଫଳ ହେଲେ ପ୍ରକୃତ ବିପଦର ସମୟ ଆସି ପହଞ୍ଚିବ । ଭାରତର ମହାମନା ବ୍ୟକ୍ତିମାନେ ଆଉ ଜାତୀୟ ଅପମାନ ସହ୍ୟ କରିପାରିବେ ନାହିଁ ଏବଂ ନିଜର କ୍ରୋଧ ପ୍ରକାଶ

କରିବାକୁ ହିଂସା ଅବଲମ୍ବନ କରିବେ । ମୋର ବିଶ୍ୱାସ, ସଶସ୍ତ୍ର ଯୁଦ୍ଧରେ ସେମାନେ ନିଜେ ବର୍ତ୍ତି ପାରିବେ ନାହିଁ । ଭାରତ ହିଂସାର ପନ୍ଥା ଧରି ବିଜୟୀ ହେଲେ ମଧ୍ୟ ସେ ବିଜୟ ଅଳ୍ପକାଳ ମାତ୍ର ସ୍ଥାୟୀ ହେବ । ସେତେବେଳେ ଭାରତକୁ ନେଇ ମୁଁ ଆଉ ଗର୍ବ କରି ପାରିବି ନାହିଁ । ଶିକ୍ଷା ଦୀକ୍ଷା ଆଦି ଜୀବନର ଯାବତୀୟ ଜିନିଷ ପାଇଁ ମୁଁ ଭାରତ ପାଖରେ ଋଣୀ । ଭାରତ ସହିତ ତେଣୁ ମୋର ବନ୍ଧନ ଅଚ୍ଛେଦ୍ୟ ।

ମୋର ଅଟଳ ବିଶ୍ୱାସ ଯେ ଭାରତର ପୃଥିବୀକୁ ମହାଶିକ୍ଷା ଦେବାର ଅଛି । ଭାରତ ନିର୍ବିଚାରରେ ୟୁରୋପକୁ ଅନୁକରଣ କରି ପାରିବ ନାହିଁ । ଭାରତ ଯଦି ସଶସ୍ତ୍ର ଯୁଦ୍ଧର ପନ୍ଥା ଧରେ, ମୋର ଧୈର୍ଯ୍ୟଚ୍ୟୁତି ଚରମ ସୀମାରେ ପହଞ୍ଚିବ । ମୋର ବିଶ୍ୱାସକୁ ନେଇ ମୋତେ ଅଲଗା ହୋଇଯିବାକୁ ହେବ । ମୋ ଧର୍ମବିଶ୍ୱାସ କୌଣସି ଦେଶସାପେକ୍ଷ ନୁହେଁ । ଭାରତ ପ୍ରତି ମୋର ଯେଉଁ ପ୍ରୀତି ରହିଛି, ଧର୍ମବିଶ୍ୱାସ ଉପରକୁ ଆଞ୍ଚ ଆସିଲେ, ତାକୁ ମଧ୍ୟ ମୋତେ ବଳି ଦେବାକୁ ହେବ । ଅହିଂସା ରୂପ ଧର୍ମଦ୍ୱାରା ଭାରତର ସେବା କରିବା ପାଇଁ ମୋ ଜୀବନ ଉତ୍ସୃଷ୍ଟ ହୋଇଅଛି । ମୋର ବିଶ୍ୱାସ, ହିନ୍ଦୁଧର୍ମର ମୂଳପିଣ୍ଡ ହେଉଛି—ଅହିଂସା ।

## ଗାଁ ସ୍ୱରାଜର ଆଦର୍ଶ

ଗାନ୍ଧୀଜୀ ଗାଁ ସ୍ୱରାଜ ସମ୍ବନ୍ଧରେ କହିଥିଲେ ଯେ, ମୋ ମତରେ ଯଦି ଗାଁ ସବୁ ଲୋପ ପାଆନ୍ତି, ଭାରତ ମଧ୍ୟ ଲୋପ ପାଇବ । ଭାରତ ଆଉ ଭାରତ ହୋଇ ରହିବ ନାହିଁ । ଜଗତ ପାଇଁ ଭାରତ ଯାହା କରନ୍ତା, ତା ବ୍ୟର୍ଥ ହେବ । ଭାରତର ଗାଁମାନଙ୍କରେ ନବଜୀବନ ସଞ୍ଚାର କରି ହେବ, ଯେତେବେଳେ ଗାଁମାନେ ଆଉ

ଶୋଷିତ ହେବେ ନାହିଁ । ବ୍ୟାପକ ଭାବରେ ଯନ୍ତ୍ରଶିଳ୍ପ ପ୍ରବର୍ତ୍ତିତ ହେଲେ ପ୍ରତିଯୋଗିତା ଓ ବଜାରର ସମସ୍ୟା ହେତୁ ଯେକ ପ୍ରତ୍ୟକ୍ଷ ବା ପରୋକ୍ଷ ଭାବରେ ଶୋଷଣ ଲାଗି ରହିବ । ତେଣୁ ଗାଁମାନେ ଯେପରି ଆତ୍ମନିର୍ଭରଶୀଳ ହୁଅନ୍ତି, ନିଜ ନିଜର ପ୍ରୟୋଜନୀୟ ଜିନିଷ ନିଜେ ତିଆରି କରନ୍ତି, ସେଥିପାଇଁ ଚେଷ୍ଟିତ ହେବାକୁ ହେବ । ଏହି ଆତ୍ମନିର୍ଭରଶୀଳତା ଲକ୍ଷ୍ୟ ହୋଇ ରହିଲେ, ଗାଁମାନଙ୍କରେ ଆଧୁନିକ ଯନ୍ତ୍ରପାତି ବ୍ୟବହୃତ ହେଲେ ଆପତ୍ତି କରିବାର କାରଣ ନ ଥିବ । ଏସବୁ ଯନ୍ତ୍ରପାତି ଅନ୍ୟମାନଙ୍କର ଶୋଷଣ କାର୍ଯ୍ୟରେ ନ ଲାଗିଲେ ହେଲା ।

ଗାଁ ସ୍ୱରାଜ କହିଲେ ମୁଁ ବୁଝେ, ଗାଁ ଗୋଟିଏ ପୂର୍ଣ୍ଣାଙ୍ଗ ସାଧାରଣତନ୍ତ୍ର । ପ୍ରୟୋଜନୀୟ ଜିନିଷମାନଙ୍କ ପାଇଁ ଏହାର ଅନ୍ୟ କାହା ଉପରେ ନିର୍ଭର କରିବାର ନାହିଁ । ଅନ୍ୟ କେତେକ ଜିନିଷ ପାଇଁ ଅନ୍ୟମାନଙ୍କ ଉପରେ ନିର୍ଭର ରହିବହିଁ ରହିବ । ତେଣୁ ପ୍ରତ୍ୟେକ ଗାଁ ନିଜର ଖାଦ୍ୟ ପାଇଁ ଫସଲ ଉତ୍ପନ୍ନ କରିବ, ଲୁଗାପଟା ପାଇଁ ତୂଳା ଉତ୍ପାଦନ କରିବ । ଏହାର ଗୃହପାଳିତ ପଶୁଙ୍କ ପାଇଁ ଆଶ୍ରୟ ଘର ଏବଂ ପିଲା ଓ ବଡ଼ଙ୍କ ପାଇଁ ଆମୋଦପ୍ରମୋଦ ଓ ଖେଳର ଉପଯୁକ୍ତ ପଡ଼ିଆ ରହିବ । ଅଧିକା ଜମି ଥିଲେ ତହିଁରେ ପଣ୍ୟ ଫସଲ ଉତ୍ପାଦନ ହୋଇ ପାରିବ; କିନ୍ତୁ କେବେହେଁ ଗଞ୍ଜେଇ, ଧୂଆଁପତ୍ର ଓ ଅଫିମ ପ୍ରଭୃତି ନିଶାଦ୍ରବ୍ୟ ଉତ୍ପାଦନ କରିବାକୁ ହେବ ନାହିଁ । ଗାଁର ଗୋଟିଏ ରଙ୍ଗମଞ୍ଚ ଏବଂ ସ୍କୁଲ ଓ ସଭାସମିତି ପାଇଁ ଗୋଟିଏ ସାଧାରଣ ହଲ୍ ରହିବ । ପରିଷ୍କାର ପାନୀୟ ଜଳ ପାଇଁ ଗାଁର ସ୍ୱତନ୍ତ୍ର ବ୍ୟବସ୍ଥା ଥିବ । ମୌଳିକ ଶେଷ ଶ୍ରେଣୀ ପର୍ଯ୍ୟନ୍ତ ଗାଁରେ ଶିକ୍ଷା ବ୍ୟବସ୍ଥା ରହିବ । ଗାଁର ସବୁ କାମ ଯଥାସମ୍ଭବ

ସହଯୋଗ ମାଧ୍ୟରେ ହେବ । ଗାଁରେ ଏବର ଜାତିଭେଦ ଓ ସ୍ପୃଶ୍ୟ ଅସ୍ପୃଶ୍ୟ ଭେଦ ରହିବ ନାହିଁ । ଗାଁଲୋକେ ଅହିଂସା ଓ ସତ୍ୟାଗ୍ରହକୁ ଆୟୁଧ କରି ଚଳିବେ । ଗାଁରେ ସମର୍ଥ ଲୋକଙ୍କର ତାଲିକା ପ୍ରସ୍ତୁତ ହୋଇ ତହିଁରୁ ଗାଁ ଜଗିବାକୁ ଗାଁ-ଗାର୍ଡ଼ ପାଳି କରି ସାମୟିକ ବଛା ହେବେ । ସେମାନଙ୍କର ସେବା ବାଧ୍ୟତାମୂଳକ ହେବ । ନିର୍ଦ୍ଦିଷ୍ଟ ଯୋଗ୍ୟତା ଥିବା ପାଞ୍ଚଜଣ ନିର୍ବାଚିତ ପ୍ରତିନିଧି ବର୍ଷକୁ ବର୍ଷ ଗ୍ରାମ-ପଞ୍ଚାୟତ ଗଢ଼ି ଗାଁର ଶାସନ ଚଳାଇବେ । ସେମାନେ ଆଇନ-କାନୁନ ପ୍ରଣୟନ ଓ ବିଚାର ଆଦି କାମ କରିବେ । ପ୍ରତି ଗାଁରେ ଏପରି ପଞ୍ଚାୟତ ରହିବ । ବିଦେଶୀ ସରକାରଙ୍କର ଗାଁ ଲୋକଙ୍କ-ଠାରୁ ଖଜଣା ଆଦାୟ କରିବାହିଁ ଏକମାତ୍ର କାମ ଥିଲା । ଏହାହିଁ ସଂକ୍ଷେପରେ ଗାଁ ସ୍ୱରାଜର ଆଦର୍ଶ । ଏ ଆଦର୍ଶ ସ୍ୱରାଜରେ ଗଣତନ୍ତ୍ର ମାତ୍ର ସାର୍ଥକ ଓ ବ୍ୟକ୍ତିଗତ ସ୍ୱାଧୀନତା ପୂର୍ଣ୍ଣାଙ୍ଗ । ବ୍ୟକ୍ତିହିଁ ନିଜର ଶାସନ ବା ସରକାର । ବ୍ୟକ୍ତି ଓ ତାଙ୍କ ପୃଥିବୀର ଯେ କୌଣସି ଶକ୍ତିର ସମ୍ମୁଖୀନ ହୋଇ ପାରିବେ । ଗାଁର ପ୍ରତ୍ୟେକ ଲୋକର ବ୍ରତ ଏଇଆ ଯେ, ସେ ନିଜର ଓ ନିଜ ଗାଁର ମାନ ରଖିବା ନିମନ୍ତେ ଦରକାର ହେଲେ ପ୍ରାଣ ଉତ୍ସର୍ଗ କରିଦେବ ।



★ ରାଷ୍ଟ୍ରଭାଷା ସମବାୟ ପ୍ରେସ, କଟକ—୨୫,୦୦୦ ★

# ମେଟ୍ରିକ୍

# ଓଜନ ଓ ମାପ ପ୍ରଣାଳୀ

| ମେଟ୍ରିକ ଓଜନ | ବାଲେଶ୍ୱରୀ ଓଜନ | ପାଉଣ୍ଡ ଓଜନ |
|---|---|---|
| ୫୦ କିଲୋ ଗ୍ରାମ | ସେ ୫୩।୪୭ ତୋଲା | ପା ୧୧୦।୪ ଆଉନ୍ସ |
| ୨୦ କିଲୋ ଗ୍ରାମ୍ | ସେ ୨୧।୩୫ | ପା ୪୪।୧ |
| ୧୦ କିଲୋ ଗ୍ରାମ୍ | ସେ ୧୦।୫୭ | ପା ୨୨।୧ |
| ୫ କିଲୋ ଗ୍ରାମ୍ | ସେ ୫।୨୯ | ପା ୧୧ ଉଣ୍ଡ |
| ୨ କିଲୋ ଗ୍ରାମ୍ | ସେ ୨।୧୧ | ପା ୪।୭ ଆଉନ୍ସ |
| ୧ କିଲୋ ଗ୍ରାମ୍ (୧୦୦୦ ଗ୍ରାମ୍) | ସେ ୧।୬ | ପା ୨।୩ |
| ୫୦୦ ଗ୍ରାମ୍ | ୪୩ ତୋଲା | ପା ୧।୧½ |
| ୨୦୦ ଗ୍ରାମ୍ | ୧୭ ତୋଲା | ୭ ଆଉନ୍ସ |
| ୧୦୦ ଗ୍ରାମ୍ | ୮½ ତୋଲା | ୩ |

ବାଲେଶ୍ୱରୀ ୧ ମହଣ = ୩୭.୩ କିଲୋ

ବାଲେଶ୍ୱରୀ ୧ ସେର = ୯୩୩ ଗ୍ରାମ୍

୧ କ୍ୱିଣ୍ଟାଲ = ୧୦୦ କିଲୋ ଗ୍ରାମ୍ = ମ ୨।୨୭ ସେର (ବାଲେଶ୍ୱରୀ)
= ପା ୨୨୦।୭ ଆଉନ୍ସ ।

୧୦ କ୍ୱିଣ୍ଟାଲ = ୧ ମେଟ୍ରିକ୍ ଟନ୍ = ମ ୨୬।୩୨ ସେର (ବାଲେଶ୍ୱରୀ)
= ପା ୨୨୦୪।୧୦ ଆଉନ୍ସ ।

୧ କ୍ୱାଟ୍ = ୫୦.୮୦ କିଲୋ ଗ୍ରାମ୍

୧ ପାଉଣ୍ଡ = ୪୫୪ ଗ୍ରାମ୍

R. B. Co-op. Press, Cuttack